# ଚୁମ୍ବକ

ଇଂ. ମାୟାଧର ସ୍ୱାଇଁ
ବି.ଏସସି(ଇଞ୍ଜିନିୟରିଙ୍ଗ), ଏମ୍.ଇ, ଏଫ୍.ଆଇ.ଇ.




ଦି ବୁକ୍ ପଏଣ୍ଟ
ଭୁବନେଶ୍ୱର

ଚୁମ୍ବକ
ଇଂ. ମାୟାଧର ସ୍ୱାଇଁ
ପ୍ରକାଶକ: ଦି ବୁକ୍ ପଏଣ୍ଟ,
ପଠାଣି ସାମନ୍ତ ପ୍ଲାନେଟୋରିୟମ୍
ଭୁବନେଶ୍ୱର - ୭୫୧୦୧୩
ଅକ୍ଷର ସଜ୍ଜା: ସଂଘମିତ୍ରା ସାହୁ (ଦି ବୁକ୍ ପଏଣ୍ଟ)
ପ୍ରଚ୍ଛଦ : ବିପିନ ବିହାରୀ ପଣ୍ଡା
ମୁଦ୍ରଣ: ଶିକ୍ଷାପ୍ରକାଶନୀ
ଏନ୍.ଡି.-୭, ଭିଆଇପି ଏରିଆ, ଆଇଆରସି ଭିଲେଜ, ଭୁବନେଶ୍ୱର
ପ୍ରଥମ ପ୍ରକାଶନ: ଗଣେଶ ଚତୁର୍ଥୀ, ୨୦୧୬
ମୂଲ୍ୟ: ଟ. ୪୪.୦୦ (ଚଉରାଳିଶ ଟଙ୍କା ମାତ୍ର)

---

**CHUMBAK**
*by* **Eng. Mayadhar Swain**
*Published by:* **The Book Point**
Pathani Samanta Planetarium Complex
Acharya Vihar, Bhubaneswar - 13
*Type setting :* **Sanghamitra Sahoo** (The Book Point)
*Cover design:* Bipin Bihari Panda
*Printed at:* **Sikshaprakashani**
N.D.-7, VIP Area, IRC Village, Bhubaneswar
*1st Edition:* **Ganesh Chaturthy, 2016**
**Price:** **Rs. 44.00 (Rupees Forty four Only)**

## ଭୂମିକା ....

ବିଜ୍ଞାନର ଆଦ୍ୟ ବିକାଶ ସମୟରୁ ଚୁମ୍ବକ ଆବିଷ୍କୃତ ହୋଇଥିଲେ ସୁଦ୍ଧା ସପ୍ତଦଶ ଶତାବ୍ଦୀ ସୁଦ୍ଧା ଏହା ସମ୍ବନ୍ଧରେ ଅଧ୍ୟୟନ କରାଯାଇ ନଥିଲା । ଚୁମ୍ବକରୁ ନିର୍ମିତ କମ୍ପାସ୍ ପ୍ରାଚୀନ କାଳର ଜଳଯାତ୍ରାରେ ଦିଗ ନିର୍ଣ୍ଣୟ ପାଇଁ ମୁଖ୍ୟ ସହାୟକ ଥିଲା । ଆଧୁନିକ ଯୁଗରେ ଏହାର ଅନେକ ବ୍ୟବହାର ଅଛି । ବିଶେଷକରି ବିଦ୍ୟୁତ୍ ଇଞ୍ଜିନିୟରିଂରେ ଏହାର ପ୍ରୟୋଗ ଉଲ୍ଲେଖନୀୟ । ଜେନେରେଟର, ମୋଟର, ଟ୍ରାନ୍ସଫର୍ମର୍ ଆଦି ବୈଦ୍ୟୁତିକ ଯନ୍ତ୍ରପାତିରେ ଏହାର ବ୍ୟବହାର ହୋଇଥାଏ । ଚୁମ୍ବକ ବିନା ବିଦ୍ୟୁତ୍ ଶକ୍ତି ପାଇବା ଅସମ୍ଭବ ହେବ ।

ଏହି ପୁସ୍ତକରେ ଚୁମ୍ବକର ମୌଳିକ ବିଜ୍ଞାନ ଓ ବ୍ୟବହାରକୁ ପିଲାମାନଙ୍କ ପାଇଁ ସରଳ ଭାଷାରେ ବୁଝାଯାଇଛି । ଏହା ପୂର୍ବରୁ ଦି ବୁକ୍ ପଏଣ୍ଟ ଦ୍ୱାରା ଏହିପରି ଏକ ପୁସ୍ତକ ‘ପରମାଣୁ’ ପ୍ରକାଶ ପାଇଛି । ଏହି ଶ୍ରେଣୀରେ ମୌଳିକ ବିଜ୍ଞାନ ଉପରେ ଆହୁରି କେତୋଟି ପୁସ୍ତକ ପିଲାମାନଙ୍କ ପାଇଁ ଲେଖିବାର ଯୋଜନା ଅଛି । ଆଶାକରେ, ଏହି ପୁସ୍ତକଟି ପିଲାମାନଙ୍କ ଦ୍ୱାରା ଆଦୃତ ହେବ ।

ଦଶହରା, ୨୦୧୫ ଇଂ. ମାୟାଧର ସ୍ୱାଇଁ
ବାସେଲିହତା, ନରସିଂହପୁର, କଟକ

# ସୂଚୀପତ୍ର

# ଚୁମ୍ବକ

ଲୋଡ଼ଷ୍ଟୋନ୍ (Lodestone) ହେଉଛି ଏକ ପ୍ରକାର ଲୁହା ପଥର । ଏହାର ଦୁଇଟି ଉଲ୍ଲେଖନୀୟ ଗୁଣ ହେଉଛି :

୧. ଏହା ଛୋଟ ଛୋଟ ଲୁହାଖଣ୍ଡକୁ ନିଜଆଡ଼କୁ ଟାଣିଥାଏ ।

୨. ଏହାକୁ ଶୂନ୍ୟରେ ଝୁଲାଇଲେ କିମ୍ବା କାଠ ଉପରେ ଏହାକୁ ରଖି ପାଣିରେ ଭସାଇଲେ, ଏହା ଉତ୍ତର-ଦକ୍ଷିଣ ଦିଗକୁ ସୂଚୀତ କରିଥାଏ ।

ଲୋଡ଼ଷ୍ଟୋନ୍ ପରି ଗୁଣ ଯେଉଁ ପଦାର୍ଥର ରହିଛି, ତାକୁ ଚୁମ୍ବକ (Magnet) କୁହାଯାଏ । ଏହି ଗୁଣକୁ ଚୁମ୍ବକତ୍ୱ (Magnetism) କୁହାଯାଏ । ଏହି କାରଣରୁ ଲୋଡ଼ଷ୍ଟୋନ୍‌କୁ ମଧ୍ୟ 'ଚୁମ୍ବକ ପଥର' କୁହାଯାଏ । ଯେହେତୁ ଲୋଡ଼ଷ୍ଟୋନ୍ ପ୍ରକୃତିରେ ପୃଥିବୀ ଅଭ୍ୟନ୍ତରରେ ଅଛି ଏବଂ ଏହାକୁ ଉତ୍ତୋଳନ କରି ବ୍ୟବହାର କରାଯାଏ, ଏହାକୁ 'ପ୍ରାକୃତିକ ଚୁମ୍ବକ' କୁହାଯାଏ । ଆମେ ମଧ୍ୟ ଚୁମ୍ବକ ପ୍ରସ୍ତୁତ କରିପାରିବା । ମନୁଷ୍ୟକୃତ ଏହି ଚୁମ୍ବକକୁ 'କୃତ୍ରିମ ଚୁମ୍ବକ' କୁହାଯାଏ । ଲୁହା ଓ ଇସ୍ପାତରୁ ଅନେକ ଚୁମ୍ବକ ନିର୍ମିତ ହୋଇଛି । ଆଉ କେତେକ ଚୁମ୍ବକ ଆଲୁମିନିୟମ୍, ନିକେଲ୍, କୋବାଲ୍ଟ ଓ ଲୁହାର ମିଶ୍ରଣରୁ ନିର୍ମିତ ହୋଇଛି । ଏହିସବୁ ଚୁମ୍ବକଗୁଡ଼ିକ ବହୁତ ଶକ୍ତିଶାଳୀ ।




ଚୁମ୍ବକ ଚୁମ୍ବକୀୟ ପଦାର୍ଥକୁ ଆକର୍ଷଣ କରେ

ପ୍ରାୟ ଦୁଇ ହଜାର ବର୍ଷ ପୂର୍ବେ ଚୁମ୍ବକ ବିଷୟରେ ଜଣାପଡ଼ିଲା । ଏସିଆ ମାଇନର୍ ପ୍ରଦେଶର ମାଗ୍ନେସିଆରେ କେତେକ ସୀସା ରଙ୍ଗର ପଥର ଲୌହଗୁଣ୍ଡ ଆକର୍ଷଣ କରୁଥିବାର ଲୋକେ ଦେଖିବାକୁ ପାଇଲେ । ଏହି ମାଗ୍ନେସିଆ ନାମ ଅନୁସାରେ ଏହାକୁ ମାଗ୍ନେଟାଇଟ୍ ନାମ ଦିଆଗଲା । ପ୍ରକୃତରେ ଏହା ହେଉଛି ଲୌହ ଅକ୍ସାଇଡ୍ ($Fe_3O_4$) । ମାଗ୍ନେସିଆ ନାମରୁ ଚୁମ୍ବକର ଇଂରାଜୀ ନାମ ମ୍ୟାଗ୍ନେଟ୍ ଆସିଛି ।

କିମ୍ବଦନ୍ତୀ ଅଛି ଯେ ମାଗ୍ନେସିଆରେ ଜଣେ ମେଷପାଳକ ପାହାଡ଼ରେ ମେଷ ଚରାଉଥିବା ବେଳେ ଗୋଟିଏ ଜାଗାରେ ତା' ଗୋଡ଼ ଲାଗି କରି ରହିଗଲା । ପ୍ରକୃତରେ ସେ ପିନ୍ଧିଥିବା ଜୋତା ତଳେ ଲୁହା ପଟି ଥିଲା ଏବଂ ଲୋଡ଼ଷ୍ଟୋନ୍ ଏହାକୁ ଟାଣି ଧରିଥିଲା । ମିଲେଟସ୍‌ର ବୈଜ୍ଞାନିକ ଥେଲସ୍ (ଖ୍ରୀ:ପୂ 625-ଖ୍ରୀ:ପୂ 545) ପ୍ରଥମେ ଚୁମ୍ବକ ବିଷୟରେ ବର୍ଣ୍ଣନା କରିଥିଲେ । ପ୍ରାୟ ସେହି ସମୟକୁ ଆମ ଭାରତର ଚିକିତ୍ସକ ଶୁଶ୍ରୁତ ଅସ୍ତ୍ର ଚିକିତ୍ସାରେ ଚୁମ୍ବକ ବ୍ୟବହାର କରୁଥିବାର ଉଲ୍ଲେଖ ଅଛି ।

ଚାଇନାରେ ଚୁମ୍ବକ ବିଷୟରେ ଖ୍ରୀ.ପୂ. ଚତୁର୍ଥ ଶତାବ୍ଦୀର ଲେଖାରେ ଉଲ୍ଲେଖ ଅଛି । ଏକାଦଶ ଶତାବ୍ଦୀ ବେଳକୁ ଚୀନ୍ ଲୋକମାନେ ଆବିଷ୍କାର କଲେ ଯେ ଲୋଡ଼ଷ୍ଟୋନ୍ ପଥରକୁ ସ୍ୱାଧୀନ ଭାବରେ ଝୁଲାଗଲେ ଏହା ସର୍ବଦା ଉତ୍ତର-ଦକ୍ଷିଣ ଦିଗରେ ରହୁଛି । ଚାଇନାର ବୈଜ୍ଞାନିକ ଶେନ୍ କୁଓ (1031-1095) ଚୁମ୍ବକୀୟ କମ୍ପାସ୍ ସମ୍ବନ୍ଧରେ ପ୍ରଥମେ ଲେଖିଥିଲେ । ବୋଧହୁଏ ଏହା ପରଠାରୁ ଏହା ଜଳଯାତ୍ରା ସମୟରେ ସମୁଦ୍ରରେ ଦିଗ ନିର୍ଣ୍ଣୟ ପାଇଁ ବ୍ୟବହୃତ ହୋଇଆସୁଛି ।



# ଚୁମ୍ବକର ବିଭିନ୍ନ ଆକାର

ଅନେକ ଆକାରର ଚୁମ୍ବକ ଅଛି । କେତେଗୁଡ଼ିଏ ସିଲିଣ୍ଡର ଆକାର ହୋଇଥିବା ବେଳେ ଆଉ କେତେକ ଆୟତାକାର ଦଣ୍ଡ ଭଳି ହୋଇଥାଏ । ଏଗୁଡ଼ିକୁ 'ଦଣ୍ଡ ଚୁମ୍ବକ' (Bar Magnet) କୁହାଯାଏ । କେତେଗୁଡ଼ିଏ ଚୁମ୍ବକ ଇଂରାଜୀ ଅକ୍ଷର 'U' ଆକାରର ହୋଇଥାଏ । ଅନ୍ୟ ଏକ ପ୍ରକାର ହେଉଛି 'ଅଶ୍ୱ-କ୍ଷୁରାକୃତି ଚୁମ୍ବକ' (Horse-shoe Magnet), କାରଣ ଏହା ଅଶ୍ୱ କ୍ଷୁରା ଭଳି ଦେଖାଯାଏ ।



ବିଭିନ୍ନ ଆକାରର

# ଚୁମ୍ବକୀୟ ପଦାର୍ଥ

ଯେଉଁ ପଦାର୍ଥଗୁଡ଼ିକ ଚୁମ୍ବକ ଦ୍ୱାରା ଆକର୍ଷିତ ହୋଇଥାଏ, ସେଗୁଡ଼ିକୁ ଚୁମ୍ବକୀୟ (magnetic) ପଦାର୍ଥ କୁହାଯାଏ । ଯେଉଁ ପଦାର୍ଥଗୁଡ଼ିକ ଚୁମ୍ବକ ଦ୍ୱାରା ଆକର୍ଷିତ ହୁଅନ୍ତି ନାହିଁ, ସେଗୁଡ଼ିକୁ ଅଣ-ଚୁମ୍ବକୀୟ ପଦାର୍ଥ କୁହାଯାଏ । ଗୋଟିଏ ଚୁମ୍ବକୀୟ ପଦାର୍ଥକୁ ଚୁମ୍ବକରେ ପରିଣତ କରି ହେବ, ମାତ୍ର ଅଣଚୁମ୍ବକୀୟ ପଦାର୍ଥକୁ ଚୁମ୍ବକରେ ପରିଣତ କରିହେବ ନାହିଁ । ଲୁହା, ଇସ୍ପାତ, ନିକେଲ ଓ କୋବାଲ୍ଟ ହେଉଛି ଚୁମ୍ବକୀୟ ପଦାର୍ଥର ଉଦାହରଣ ଏବଂ କାଠ, ରବର, କାଚ, ପ୍ଲାଷ୍ଟିକ୍ ଆଦି ହେଉଛି ଅଣ-ଚୁମ୍ବକୀୟ ପଦାର୍ଥର ଉଦାହରଣ । ଗୋଟିଏ ଚୁମ୍ବକ ନେଇ ନିମ୍ନଲିଖିତ ପଦାର୍ଥଗୁଡ଼ିକ ଚୁମ୍ବକୀୟ ନା ନାହିଁ ପରୀକ୍ଷା କର ।

| | | |
|---|---|---|
| (୧) ରୁଲର୍ | (୨) ପାନିଆଁ | (୩) କାଚ |
| (୪) ସ୍କ୍ରୁ ଡ୍ରାଇଭର | (୫) କଇଁଚି | (୬) ଚକ୍ |
| (୭) ପେନ୍‌ସିଲ୍ | (୮) ଟିଣ ଡବା | (୯) ନଖ |
| (୧୦) ଟଙ୍କିକିଆ ମୁଦ୍ରା | (୧୧) ଦିଆସିଲି ବାକ୍ସ | (୧୨) କର୍କ |
| (୧୩) ରବର | (୧୪) କଲମ | (୧୫) ଚାବି |

## ଚୁମ୍ବକୀୟ ପଦାର୍ଥର ଶ୍ରେଣୀ ବିଭାଗ

ପ୍ରତ୍ୟେକ ପଦାର୍ଥର ଅଳ୍ପ ବହୁତେ ଚୁମ୍ବକୀୟ ଗୁଣ ଅଛି । ପଦାର୍ଥଗୁଡ଼ିକର ଚୁମ୍ବକୀୟ ଲକ୍ଷଣ ତଥା ଆପେକ୍ଷିକ ଚୁମ୍ବକତ୍ୱକୁ ହିସାବକୁ ନେଇ ସେଗୁଡ଼ିକୁ ତିନି ଭାଗରେ ବିଭକ୍ତ କରାଯାଇଛି ।

୧. ଲୌହ ଚୁମ୍ବକୀୟ ପଦାର୍ଥ (Ferromagnetic material)

୨. ଅନୁଚୁମ୍ବକୀୟ ପଦାର୍ଥ (Paramagnetic material)

୩. ପ୍ରତିଚୁମ୍ବକୀୟ ପଦାର୍ଥ (Diamagnetic material)

ଲୁହା, ଇସ୍ପାତ, ନିକେଲ୍, କୋବାଲ୍ଟ ଏବଂ ସେମାନଙ୍କର କେତେକ ମିଶ୍ରଧାତୁ ହେଉଛି ଲୌହ ଚୁମ୍ବକୀୟ ପଦାର୍ଥ । ଏହି ଶ୍ରେଣୀର ପଦାର୍ଥଗୁଡ଼ିକର ଚୁମ୍ବକତ୍ୱ ହେଉଛି ଅଧିକ । ଚୁମ୍ବକ ଦ୍ୱାରା ଏଗୁଡ଼ିକର ଆକର୍ଷଣ ବଳ ହେଉଛି ଅଧିକ ।

ଆଲୁମିନିୟମ୍, ଟିଣ, ପ୍ଲାଟିନିୟମ୍, ମାଙ୍ଗାନିଜ୍ ଆଦି ହେଉଛି ଅନୁଚୁମ୍ବକୀୟ ପଦାର୍ଥ । ଏହି ଶ୍ରେଣୀର ପଦାର୍ଥଗୁଡ଼ିକର ଚୁମ୍ବକ ଦ୍ୱାରା ଆକର୍ଷଣ ବଳ କମ୍ । ଏଗୁଡ଼ିକୁ ଚୁମ୍ବକରେ ପରିଣତ କଲେ ଦୁର୍ବଳ ଚୁମ୍ବକ ସୃଷ୍ଟି ହୋଇଥାଏ ।

ଦସ୍ତା, ପାରଦ, ସୀସା, ଗନ୍ଧକ, ରୂପା, ତମ୍ବା, ବିସମଥ୍, ଗ୍ରାଫାଇଟ୍ ଆଦି ହେଉଛି ପ୍ରତିଚୁମ୍ବକୀୟ ପଦାର୍ଥ । ଏଗୁଡ଼ିକୁ ଅତି ଶକ୍ତିଶାଳୀ ଚୁମ୍ବକୀୟ କ୍ଷେତ୍ରରେ ରଖିଲେ ଅତି କମ୍ ଚୁମ୍ବକତ୍ୱ ହାସଲ କରିଥାନ୍ତି । ଏଗୁଡ଼ିକ ମଧ୍ୟରେ ବିସମଥ୍ ଓ ଗ୍ରାଫାଇଟ୍ ହେଉଛି ଅପେକ୍ଷାକୃତ ଶକ୍ତିଶାଳୀ ଚୁମ୍ବକୀୟ ପଦାର୍ଥ ।



# ଚୁମ୍ବକୀୟ ମେରୁ

ଚୁମ୍ବକୀୟ ପଦାର୍ଥଗୁଡ଼ିକୁ ଚୁମ୍ବକ ତା' ନିକଟକୁ ଟାଣିଆଣେ । ଏହାର ଅର୍ଥ ହେଉଛି ଚୁମ୍ବକର ଗୋଟିଏ ଆକର୍ଷଣ ବଳ ଅଛି । ଗୋଟିଏ ଚୁମ୍ବକର ପ୍ରତ୍ୟେକ ଜାଗାରେ କ'ଣ ଆକର୍ଷଣ ବଳ ସମାନ ? ଗୋଟିଏ ପରୀକ୍ଷା କରିବା ।

ଗୋଟିଏ ପାତ୍ରରେ ଲୁହାର କିଛି କାଗଜ କ୍ଲିପ୍ ରଖ ଏବଂ ଏହା ଉପରେ ଗୋଟିଏ ଦଣ୍ଡ ଚୁମ୍ବକ ରଖ । ଏହାପରେ ଚୁମ୍ବକକୁ ଉଠାଇ ଆଣ । ଚୁମ୍ବକ ସହିତ କିଛି କ୍ଲିପ୍ ଲାଖି ରହିଯାଇଥିବ । ଚୁମ୍ବକର କେଉଁ ଭାଗରେ ଅଧିକ କ୍ଲିପ୍ ଲାଖି କରି ରହିଛି ? ଏହି ପରୀକ୍ଷାରୁ ଜଣାପଡ଼ିବ ଯେ ଚୁମ୍ବକର ଦୁଇ ପାଖରେ ଅଧିକ କ୍ଲିପ୍ ଲାଖି ରହିଛି । ଅର୍ଥାତ୍ ଚୁମ୍ବକର ମଝି ଭାଗ ଅପେକ୍ଷା ଦୁଇ ମୁଣ୍ଡରେ ଅଧିକ ଚୁମ୍ବକୀୟ ବଳ ଅଛି । 'U' ଆକାରର, ଅଶ୍ୱକ୍ଷୁରାକୃତି ଆକାରର ଏବଂ ସିଲିଣ୍ଡର ଆକାରର ଚୁମ୍ବକ ନେଇ ଏହି ପରୀକ୍ଷାର ପୁନରାବୃତ୍ତି କର । ପ୍ରତ୍ୟେକ କ୍ଷେତ୍ରରେ ଏହାର ଦୁଇ ପାର୍ଶ୍ୱରେ ଅଧିକ କ୍ଲିପ୍ ଲାଖି କରି ରହିବ । ଚୁମ୍ବକର ଦୁଇ ପାର୍ଶ୍ୱକୁ ଏହାର ମେରୁ (pole) କୁହାଯାଏ । ଗୋଟିଏ ଚୁମ୍ବକର ପ୍ରତ୍ୟେକ ପାର୍ଶ୍ୱରେ ଗୋଟିଏ ଚୁମ୍ବକୀୟ ମେରୁ ଅଛି । ଏହାର ଆକାର ଯାହା ହେଉନା କାହିଁକି, ଚୁମ୍ବକର ନିଶ୍ଚୟ ଦୁଇଟି ମେରୁ ରହିବ । ଗୋଟିଏ ଦଣ୍ଡ ଚୁମ୍ବକକୁ ମଝିରୁ କାଟି ଦୁଇଖଣ୍ଡ କରିଦେଲେ ମଧ୍ୟ ପ୍ରତ୍ୟେକ ଖଣ୍ଡର ଦୁଇଟି ମେରୁ ରହିବ ।

ଚୁମ୍ବକର ଦୁଇ ପାର୍ଶ୍ୱରେ ସାଧାରଣତଃ ଦୁଇଟି ବିପରୀତ ଚୁମ୍ବକୀୟ ମେରୁ ଥାଏ । କେତେକ କ୍ଷେତ୍ରରେ ଚୁମ୍ବକର ଦୁଇ ପାର୍ଶ୍ୱରେ ସମାନ ଚୁମ୍ବକୀୟ ମେରୁ ଥାଏ; କାରଣ ଏହି ଚୁମ୍ବକଗୁଡ଼ିକୁ ଏହିପରି ତିଆରି କରାଯାଇଥାଏ । ଏହି ଦୁଇ ମେରୁକୁ ଉତ୍ତର ମେରୁ ଓ ଦକ୍ଷିଣ ମେରୁ କୁହାଯାଏ । ଚୁମ୍ବକକୁ ଶୂନ୍ୟରେ ଝୁଲାଇଲେ ଯେଉଁ ମେରୁ ଉତ୍ତର ଦିଗକୁ ସୂଚୀତ କରେ, ତାକୁ ଉତ୍ତର ମେରୁ ଏବଂ ଅନ୍ୟ ମେରୁକୁ ଦକ୍ଷିଣ ମେରୁ କୁହାଯାଏ ।







ଗୋଟିଏ ଚୁମ୍ବକର ଉତ୍ତର ମେରୁ ଅନ୍ୟ ଏକ ଚୁମ୍ବକର ଦକ୍ଷିଣ ମେରୁକୁ ଆକର୍ଷଣ କରିବ (ଟାଣିବ) । ସେହିପରି ଗୋଟିଏ ଚୁମ୍ବକର ଦକ୍ଷିଣ ମେରୁ ଅନ୍ୟ ଚୁମ୍ବକର ଉତ୍ତର ମେରୁକୁ ଆକର୍ଷଣ କରିବ । ଏଣୁ ଚୁମ୍ବକର ଗୁଣ ହେଉଛି ଯେ 'ଅସମାନ ମେରୁ ପରସ୍ପରକୁ ଆକର୍ଷଣ କରନ୍ତି ।'

ଗୋଟିଏ ଚୁମ୍ବକର ଉତ୍ତର ମେରୁ ଅନ୍ୟ ଏକ ଚୁମ୍ବକର ଉତ୍ତର ମେରୁକୁ ବିକର୍ଷଣ କରିବ (ଠେଲିଦେବ) । ସେହିପରି ଗୋଟିଏ ଚୁମ୍ବକର ଦକ୍ଷିଣ ମେରୁ ଅନ୍ୟ ଏକ ଚୁମ୍ବକର ଦକ୍ଷିଣ ମେରୁକୁ ବିକର୍ଷଣ କରିବ । ଏଥିରୁ ଆମେ ଚୁମ୍ବକର ଅନ୍ୟ ଏକ ଗୁଣ ଜାଣିଲେ । ତାହା ହେଉଛି, "ସମାନ ମେରୁ ପରସ୍ପରକୁ ବିକର୍ଷଣ କରିବେ ।" ଗୋଟିଏ ପରୀକ୍ଷା କରିବା ।

୧) ଗୋଟିଏ ସୂତା ଏବଂ ଦୁଇଟି ଦଣ୍ଡ ଚୁମ୍ବକ ନିଅ । ଗୋଟିଏ ଚୁମ୍ବକକୁ ସୂତାରେ ଝୁଲାଇ ଦିଅ । ଏହା ମୁକ୍ତ ଭାବରେ ଘୂରିବ । ଏହା ଘୂରିବା ବନ୍ଦ ହୋଇଗଲେ ନିମ୍ନ ପରୀକ୍ଷା କର ।

(କ) ଦ୍ୱିତୀୟ ଚୁମ୍ବକର ଉତ୍ତର ମେରୁକୁ ଝୁଲୁଥିବା ଚୁମ୍ବକର ଉତ୍ତର ମେରୁ ନିକଟକୁ ଆଣ । କ'ଣ ହେବ ? ଝୁଲୁଥିବା ଚୁମ୍ବକଟି ପଛକୁ ହଟିଯିବ ।

(ଖ) ଦ୍ୱିତୀୟ ଚୁମ୍ବକର ଉତ୍ତର ମେରୁକୁ ଝୁଲୁଥିବା ଚୁମ୍ବକର ଦକ୍ଷିଣ ମେରୁ ନିକଟକୁ ଆଣ । କ'ଣ ଦେଖିବ ? ଝୁଲୁଥିବା ଚୁମ୍ବକଟି ଦ୍ୱିତୀୟ ଚୁମ୍ବକଆଡ଼କୁ ଟାଣି ହୋଇଯିବ ।



ଚୁମ୍ବକଦ୍ୱର ନିୟମ

(ଗ) ଦ୍ୱିତୀୟ ଚୁମ୍ବକର ଦକ୍ଷିଣ ମେରୁକୁ ଝୁଲୁଥିବା ଚୁମ୍ବକର ଉତ୍ତର ମେରୁ ନିକଟକୁ ଆଣ । କ'ଣ ହେବ ? ଝୁଲୁଥିବା ଚୁମ୍ବକଟି ଦ୍ୱିତୀୟ ଚୁମ୍ବକଆଡ଼କୁ ଟାଣି ହୋଇଆସିବ ।

୨) ଗୋଟିଏ ହେକ୍‌ସା ବ୍ଲେଡ଼ (Hacksaw blade)କୁ ଗୋଟିଏ ଚୁମ୍ବକ ଦ୍ୱାରା ଧୀରେ ଧୀରେ ବାଡ଼େଇ ବ୍ଲେଡ଼କୁ ଚୁମ୍ବକରେ ପରିଣତ କର । ବ୍ଲେଡ଼କୁ ମଝିରୁ ଭାଙ୍ଗି ଦିଅ । ଭାଙ୍ଗି ଯାଇଥିବା ଦୁଇଖଣ୍ଡ ପ୍ରତ୍ୟେକର ବିପରୀତ ମେରୁ ଅଛି କି ? ପ୍ରତ୍ୟେକ ଖଣ୍ଡକୁ ଉପରେ ବର୍ଣ୍ଣିତ ଝୁଲନ୍ତା ଚୁମ୍ବକ ପାଖକୁ ନେଇ ଏହା ଜାଣିହେବ ।

ଏଥିରୁ ଆମେ ଜାଣିଲେ ଯେ ଗୋଟିଏ ଚୁମ୍ବକକୁ କାଟି ଆମେ ଅସଂଖ୍ୟ ଛୋଟ ଛୋଟ ଖଣ୍ଡରେ ପରିଣତ କରିପାରିବା ଏବଂ ପ୍ରତ୍ୟେକ ଛୋଟ ଖଣ୍ଡ ତଥାପି ଗୋଟିଏ ଚୁମ୍ବକ ଭାବେ ରହିବ ।




ଗୋଟିଏ ଦଣ୍ଡ ଚୁମ୍ବକକୁ ତିନି ଖଣ୍ଡ କରାଯାଇଛି



# ଚୁମ୍ବକର ସାମର୍ଥ୍ୟ

ସମସ୍ତ ଚୁମ୍ବକର କ'ଣ ସମାନ ସାମର୍ଥ୍ୟ (Strength) ଅଛି ? ଆସ ଗୋଟିଏ ପରୀକ୍ଷା କରିବା । ସୂତାର ଗୋଟିଏ ପଟକୁ ଗୋଟିଏ ଲୁହା କାଗଜ କ୍ଲିପ୍ ସହ ବାନ୍ଧ । ସୂତାର ଅନ୍ୟପଟକୁ କାଠ ପଟାରେ ଲାଗିଥିବା ଗୋଟିଏ ଡ୍ରଇଂ ପିନ୍ ସହ ଲଗାଅ । ଗୋଟିଏ ହାତରେ ଚୁମ୍ବକଟିଏ ଧର ଏବଂ କାଗଜ କ୍ଲିପ୍‌କୁ ଏହା ସହିତ ଲଗାଇ ଚୁମ୍ବକକୁ ଉପରକୁ ଉଠାଅ । ସୂତାଟି ସିଧା ହୋଇଯିବ । ଚୁମ୍ବକକୁ ଉପରକୁ ଉଠାଅ ଯେପରି ଏହା କ୍ଲିପ୍‌ଠାରୁ ଅଲଗା ହୋଇଯିବ (ଚିତ୍ର ଦ୍ରଷ୍ଟବ୍ୟ) ।

ଚୁମ୍ବକକୁ ପୁଣି ଉପରକୁ ଧୀରେ ଧୀରେ ଉଠାଅ ଏବଂ ଯେଉଁ ସ୍ଥାନରେ କ୍ଲିପ୍‌ଟି କାଠପଟା ଉପରକୁ ପଡ଼ିବା ଆରମ୍ଭ କରିବ, ସେଇଠି ରହିଯାଅ । ଚୁମ୍ବକର ନିମ୍ନତମ ବିନ୍ଦୁ ଏବଂ କ୍ଲିପ୍ ଉଚ୍ଚତମ ବିନ୍ଦୁ ମଧ୍ୟରେ ଦୂରତା ମାପ । ଅନ୍ୟ ଚୁମ୍ବକ ସାହାଯ୍ୟରେ ଏହି ପରୀକ୍ଷାର ପୁନରାବୃତ୍ତି କର । କେଉଁଟି ଅଧିକ ଶକ୍ତିଶାଳୀ ଚୁମ୍ବକ ? ନିଶ୍ଚିତ ଭାବରେ ଯେଉଁ କ୍ଷେତ୍ରରେ ଏହି ଦୂରତା ଅଧିକ ହେବ, ତାହା ହେଉଛି ଶକ୍ତିଶାଳୀ ଚୁମ୍ବକ ।




ଦଣ୍ଡ ଚୁମ୍ବକର ସାମର୍ଥ୍ୟ ପରୀକ୍ଷା

# ଚୁମ୍ବକୀୟ ବଳ

ଆମେ ଜାଣିଛେ ଯେ ଚୁମ୍ବକର ଗୋଟିଏ ଆକର୍ଷଣ ବଳ ଅଛି । ଏହି ଚୁମ୍ବକୀୟ ବଳ କେତୋଟି ପଦାର୍ଥ ମଧ୍ୟ ଦେଇ ଗତି କରିପାରେ । ସେହି ପଦାର୍ଥଗୁଡ଼ିକ କ'ଣ ? ଗୋଟିଏ ପରୀକ୍ଷା କରିବା ।

୧) ଗୋଟିଏ କାଠପଟା ଉପରେ ରବର ପଟି ସାହାଯ୍ୟରେ ଲୁହା କଣ୍ଟାଟିଏ ରଖ । କାଠପଟାଟି ପାଣିରେ ଭାସିପାରିବ । ଗୋଟିଏ ପ୍ଲାଷ୍ଟିକ୍ ପାତ୍ରରେ ପାଣି ଭର୍ତ୍ତି କର । କଣ୍ଟା ଲାଗିଥିବା କାଠପଟାଟିକୁ ଏଥିରେ ଭସାଅ । ପାତ୍ର ତଳେ ଗୋଟିଏ ଚୁମ୍ବକ ଧରି ତାକୁ ଧୀରେ ଧୀରେ ଗତି କରାଅ ।



(ପ୍ଲାଷ୍ଟିକ୍ ଓ ଜଳ ମଧ୍ୟ ଦେଇ ଚୁମ୍ବକୀୟ ବଳ ଗତି କରିପାରେ)

ତୁମେ ଦେଖିପାରିବ ଯେ କାଠପଟାଟି ଚୁମ୍ବକ ଗତି ଦିଗରେ ଗତି କରିବ । କାରଣ ପ୍ଲାଷ୍ଟିକ୍ ପାତ୍ର ଓ ପାଣି ଦେଇ ଚୁମ୍ବକୀୟ ବଳ ଯାଇପାରି କାଠପଟାରେ ଥିବା ଲୁହା କଣ୍ଟାକୁ ଆକର୍ଷଣ କରୁଛି । ପ୍ଲାଷ୍ଟିକ୍ ପାତ୍ରର ତଳ ଭାଗରୁ ଚୁମ୍ବକକୁ ଦୂରରେ ଧର । ଏଥର ଚୁମ୍ବକକୁ ଗତି କରାଇଲେ କାଠପଟା ପୂର୍ବ ପରି ଗତି କରିବ ନାହିଁ । କାରଣ ଚୁମ୍ବକଟି ଦୂରରେ ଥିବାରୁ ଲୁହାକଣ୍ଟା ଉପରେ ଏହାର ଆକର୍ଷଣ ବଳ ହ୍ରାସ ପାଇଥାଏ ।

(୨) ଗୋଟିଏ ଲୁହା କଣ୍ଟା କିମ୍ବା ଲୁହା ନିର୍ମିତ ଖେଳନା ଗାଡ଼ିଟିଏ ନିଅ ଏବଂ ଗୋଟିଏ କାଠପଟା ଉପରେ ଏହାକୁ ରଖ । କାଠପଟାର ଦୁଇ ସେଣ୍ଟିମିଟର ତଳେ ଗୋଟିଏ ଚୁମ୍ବକ ଧର ଏବଂ ଧୀରେ ଧୀରେ ଏହାକୁ ଗତି କରାଅ ।

ତୁମେ ଦେଖିପାରିବ ଯେ ଲୁହା କଣ୍ଟା କିମ୍ବା ଖେଳନା ଗାଡ଼ି ଚୁମ୍ବକ ଯେଉଁ ଦିଗରେ ଗତି କରୁଛି, ସେହି ଦିଗରେ ଗତି କରିବ । ଏହାର କାରଣ ହେଉଛି ଯେ କାଠ ମଧ୍ୟ ଦେଇ ଚୁମ୍ବକୀୟ ବଳ ଯାଇପାରୁଛି ।

ବର୍ତ୍ତମାନ କାଠ ବଦଳରେ ଅନ୍ୟ ବସ୍ତୁ ଯଥା- କାଚ, ରବର ଓ ଲୁହା ନେଇ ଏହି ପରୀକ୍ଷା କର ଏବଂ ଏହା ମଧ୍ୟ ଦେଇ ଚୁମ୍ବକୀୟ ବଳ ଯାଇପାରୁଛି ନା ନାହିଁ ଲକ୍ଷ୍ୟ କର ।



(ଚୁମ୍ବକୀୟ ବଳ କାଠ ମଧ୍ୟ ଦେଇ ଗତି କରିପାରେ)

□□□

# ପ୍ରେରିତ ଚୁମ୍ବକତ୍ୱ

ଚୁମ୍ବକତ୍ୱ ହାସଲ କରି ନଥିବା ଗୋଟିଏ ଚୁମ୍ବକୀୟ ପଦାର୍ଥକୁ ଗୋଟିଏ ଚୁମ୍ବକର ମେରୁ ନିକଟକୁ ଆଣିଲେ, ଏହା ଚୁମ୍ବକରେ ପରିଣତ ହୋଇଥାଏ । ଏହାକୁ ପ୍ରେରିତ ଚୁମ୍ବକତ୍ୱ କୁହାଯାଏ । ଚୁମ୍ବକର ଦକ୍ଷିଣ ମେରୁ ନିକଟରେ ଥିବା ଚୁମ୍ବକୀୟ ପଦାର୍ଥର ଅଂଶଟି ଉତ୍ତର ମେରୁ ଓ ବିପରୀତ ମୁଣ୍ଡଟି ଦକ୍ଷିଣ ମେରୁରେ ପରିଣତ ହୋଇଥାଏ । ସେହିପରି ଯଦି ଚୁମ୍ବକର ଉତ୍ତର ମେରୁ ନିକଟକୁ ଚୁମ୍ବକୀୟ ପଦାର୍ଥକୁ ଆଣିବା, ତା'ହେଲେ ଉତ୍ତର ମେରୁ ନିକଟରେ ଥିବା ମୁଣ୍ଡ ଦକ୍ଷିଣ ମେରୁ ଏବଂ ଅନ୍ୟ ମୁଣ୍ଡଟି ଉତ୍ତର ମେରୁ ହୋଇଥାଏ ।




□□□

# ଚୁମ୍ବକ କିପରି ତିଆରି କରିବା ?

ଆମେ ନିଜେ ଆମର ଚୁମ୍ବକ ତିଆରି କରିପାରିବା । ନିମ୍ନ ଉପାୟ ଦୁଇଟି ଦେଖିବା ।

୧) ଗୋଟିଏ ଚୁମ୍ବକ, ଗୋଟିଏ ବଡ଼ ଲୁହାକଣ୍ଟା ଏବଂ କିଛି କାଗଜ କ୍ଲିପ୍ ନିଅ । କାଗଜ କ୍ଲିପ୍‌ଗୁଡ଼ିକୁ ଲୁହାକଣ୍ଟା ସହ ଲଗାଇ ରଖ । ଲୁହାକଣ୍ଟା କାଗଜ କ୍ଲିପ୍‌ଗୁଡ଼ିକୁ ଟାଣୁଛି କି ?

ବର୍ତ୍ତମାନ ଚୁମ୍ବକ, ଲୁହାକଣ୍ଟା ଓ କାଗଜ କ୍ଲିପ୍‌ଗୁଡ଼ିକୁ ଗୋଟିଏ ଧାଡ଼ିରେ ରଖ । କ୍ଲିପ୍‌ଗୁଡ଼ିକୁ କଣ୍ଟା ନିକଟକୁ ନିଅ । କ୍ଲିପ୍‌ଗୁଡ଼ିକର କ'ଣ ହେଲା ? ଏହାପରେ ଚୁମ୍ବକକୁ ଦୂରକୁ ନେଇଯାଅ । କଣ୍ଟା କ'ଣ ତଥାପି କାଗଜ କ୍ଲିପ୍‌ଗୁଡ଼ିକୁ ଟାଣୁଛି ? କିଛି ସମୟ ପରେ କଣ୍ଟା କ'ଣ ତଥାପି କାଗଜ କ୍ଲିପ୍‌ଗୁଡ଼ିକୁ ଟାଣୁଛି ?




(ପ୍ରେରିତ ପଦ୍ଧତିରେ ଚୁମ୍ବକ ନିର୍ମାଣ)

୨) ଗୋଟିଏ ଚୁମ୍ବକ, ଇସ୍ପାତର ସିଲେଇ ଛୁଞ୍ଚି ଏବଂ କେତେକ କାଗଜ କ୍ଲିପ୍ ନିଅ । ଗୋଟିଏ ଟେବୁଲ୍ ଉପରେ ଛୁଞ୍ଚିଟିକୁ ରଖ ଏବଂ ଏହାପରେ ଗୋଟିଏ ଚୁମ୍ବକ ସାହାଯ୍ୟରେ ଏହାକୁ ଧୀରେ ଧୀରେ ଆଘାତ କର । ଛୁଞ୍ଚିର ଗୋଟିଏ ପଟୁ ଅନ୍ୟ ପଟକୁ ଗୋଟିଏ ଦିଗରେ ସର୍ବଦା ଚୁମ୍ବକର ସମାନ ମେରୁ ବ୍ୟବହାର କରି ଏହା କର । ଏହା ପ୍ରାୟ ୩୦ ଥର କର । ଛୁଞ୍ଚି ସାହାଯ୍ୟରେ କେତୋଟି କାଗଜ କ୍ଲିପ୍ ଉଠାଅ । ଛୁଞ୍ଚିଟି ବର୍ତ୍ତମାନ ଗୋଟିଏ ଚୁମ୍ବକରେ ପରିଣତ ହୋଇଛି । କିଛି ସମୟ ପରେ କ'ଣ ଛୁଞ୍ଚିଟି ପେପର କ୍ଲିପ୍‌କୁ ତଥାପି ଟାଣୁଛି ?

ଆମେ ଜାଣିଲେ ଯେ ଆଘାତ ଦ୍ୱାରା ଚୁମ୍ବକ ତିଆରି କରିହେବ । ଏହା ହେଉଛି ଦୁଇ ପ୍ରକାର, ଯଥା- (କ) ଏକକ ସ୍ପର୍ଶ ପଦ୍ଧତି ଓ (ଖ) ଦ୍ୱୈତ ସ୍ପର୍ଶ ପଦ୍ଧତି । ଦ୍ୱୈତ ସ୍ପର୍ଶ ପଦ୍ଧତି ହେଉଛି ଅଧିକ ଫଳପ୍ରଦ । ନିମ୍ନରେ ଦୁଇ ପଦ୍ଧତିର ଚିତ୍ର ପ୍ରଦାନ କରାଯାଇଛି ।




ଏକକ ସ୍ପର୍ଶ ପଦ୍ଧତି




ଦ୍ୱୈତ୍ୟ ସ୍ପର୍ଶ ପଦ୍ଧତି

ବୈଦ୍ୟୁତିକ ଉପାୟରେ ମଧ୍ୟ ଚୁମ୍ବକ ନିର୍ମାଣ କରିହେବ । ବୈଦ୍ୟୁତିକ ଚୁମ୍ବକ ସମ୍ବନ୍ଧରେ ଆମେ ପର ଅଧ୍ୟାୟରେ ଜାଣିବା ।



# ଚୁମ୍ବକତ୍ୱର କାରଣ

କେତେକ ପଦାର୍ଥର ଚୁମ୍ବକୀୟ ଗୁଣ ଥିବାବେଳେ ଅନ୍ୟ କେତେକ ପଦାର୍ଥର ଚୁମ୍ବକୀୟ ଗୁଣ ନାହିଁ । ଏହାର କାରଣ ଅତ୍ୟାଧୁନିକ କ୍ୱାଣ୍ଟମ୍ ପଦାର୍ଥ ବିଜ୍ଞାନ ଅବଲମ୍ବନରେ ବୁଝାଯାଇଛି, ଯାହାକୁ ବୁଝିବା ପାଇଁ ଉଚ୍ଚତର ଅଧ୍ୟୟନ ଦରକାର । ତେବେ ମୋଟାମୋଟି ଭାବରେ ଏହା ପଦାର୍ଥର ପରମାଣୁର ଗଠନ ଉପରେ ନିର୍ଭର କରିଥାଏ ।

ଆମେ ଜାଣୁ ଯେ ପରମାଣୁ ହେଉଛି ପଦାର୍ଥର ଅବିଭାଜ୍ୟ ଅଂଶ; ଅର୍ଥାତ୍ ପଦାର୍ଥକୁ ଭାଙ୍ଗି ଭାଙ୍ଗି ଗଲେ ଶେଷରେ ଆମେ ପରମାଣୁ ପାଖରେ ପହଞ୍ଚିବା ଯାହାକୁ ଆଉ ଭାଙ୍ଗି ହୁଏ ନାହିଁ । ଆଜକୁ ୨୫୦୦ ବର୍ଷ ପୂର୍ବେ ଏହା ଜଣାଥିଲା । ଗ୍ରୀକ୍‌ର ଡିମୋକ୍ରିଟ୍‌ସ ଓ ଭାରତର କଣାଦ ଏହା ଉପରେ ଲେଖିଛନ୍ତି । ମାତ୍ର ଆଧୁନିକ ଯୁଗରେ ପରମାଣୁ ଉପରେ ଅଧିକ ପରୀକ୍ଷା ଓ ଗବେଷଣା ହୋଇ ଏହାର ଆଭ୍ୟନ୍ତରୀଣ ସଂରଚନା ଉପରେ ଜଣାଗଲାଣି ।

ପରମାଣୁର ତିନୋଟି ମୁଖ୍ୟ ଅଂଶ ହେଉଛି ପ୍ରୋଟୋନ୍, ନିଉଟ୍ରନ୍ ଓ ଇଲେକ୍ଟ୍ରନ୍ । ପ୍ରୋଟୋନ୍ ହେଉଛି ଧନାତ୍ମକ ଚାର୍ଜଯୁକ୍ତ, ଇଲେକ୍ଟ୍ରନ୍ ହେଉଛି ଋଣାତ୍ମକ ଚାର୍ଜଯୁକ୍ତ ଏବଂ ନିଉଟ୍ରନ୍ ହେଉଛି ଚାର୍ଜବିହୀନ କଣିକା । ପ୍ରୋଟୋନ୍ ଓ ନିଉଟ୍ରନ୍ ମିଳିତ ଭାବେ ପରମାଣୁର କେନ୍ଦ୍ରସ୍ଥଳରେ ଅତିକମ୍ ଜାଗାରେ ଖୁନ୍ଦାଖୁନ୍ଦି ହୋଇ ରହିଥାନ୍ତି । ଏହାକୁ ନାଭିକ ବା ନ୍ୟୁକ୍ଲିୟସ୍ କୁହାଯାଏ । ନାଭିକ ଚାରିପାଖେ ଇଲେକ୍ଟ୍ରନ୍‌ଗୁଡ଼ିକ ବିଭିନ୍ନ କକ୍ଷରେ ଘୂରୁଥାନ୍ତି ।

ଇଲେକ୍ଟ୍ରନ୍‌ଗୁଡ଼ିକ ନାଭିକ ଚାରିପଟେ ପରିକ୍ରମଣ କରିବା ସହ ନିଜ ଅକ୍ଷ ଚାରିପଟେ ମଧ୍ୟ ଘୂରିଥାନ୍ତି (ଯେପରି ସୂର୍ଯ୍ୟ ଚାରିପଟେ ଗ୍ରହଗୁଡ଼ିକ ପରିକ୍ରମଣ କରିବା ସହ ନିଜ ନିଜ ଅକ୍ଷ ଚାରିପଟେ ମଧ୍ୟ ଘୂରିଥାନ୍ତି) । ଏହାକୁ ବିଜ୍ଞାନ ଭାଷାରେ ସ୍ପିନ୍ (Spin) କୁହାଯାଏ । ଏହି ସ୍ପିନ୍ ହେଉଛି ଚୁମ୍ବକତ୍ୱର କାରଣ । ଇଲେକ୍ଟ୍ରନ୍‌ଗୁଡ଼ିକ ସ୍ପିନ୍ କରି ନାଭିକ ଚାରିପଟେ ଘୂରିବା ବେଳେ ଚୁମ୍ବକୀୟ କ୍ଷେତ୍ର ସୃଷ୍ଟି କରନ୍ତି । ଉନବିଂଶ ଶତାବ୍ଦୀରେ ଏ.ଏମ୍. ଆମ୍ପିୟର ପ୍ରଥମେ ପ୍ରକାଶ କରିଥିଲେ ଯେ ପରମାଣୁ ଭିତରେ




ପରମାଣୁ

ନିରନ୍ତର ଘୂର୍ଣ୍ଣାୟମାନ ବିଦ୍ୟୁତ୍ କରେଣ୍ଟ ଯୋଗୁଁ ଚୁମ୍ବକୀୟ କ୍ଷେତ୍ର ସୃଷ୍ଟି ହେଉଛି । ଆଶ୍ଚର୍ଯ୍ୟର କଥା ଯେ ଏହାର ପ୍ରାୟ ୭୫ ବର୍ଷ ପରେ ଇଲେକ୍ଟ୍ରନ୍ ଆବିଷ୍କୃତ ହେଲା ।

ଏଠାରେ ପ୍ରଶ୍ନ ଉଠେ ଯେ ପ୍ରତ୍ୟେକ ପଦାର୍ଥ ପରମାଣୁରୁ ସୃଷ୍ଟି ହୋଇଛି ଏବଂ ପ୍ରତ୍ୟେକ ପରମାଣୁର ଇଲେକ୍ଟ୍ରନ୍ ଅଛି; ତା'ହେଲେ ପ୍ରତ୍ୟେକ ପଦାର୍ଥର କାହିଁକି ଚୁମ୍ବକୀୟ କ୍ଷେତ୍ର ନାହିଁ ? ବାସ୍ତବରେ ପ୍ରତ୍ୟେକ ଇଲେକ୍ଟ୍ରନ୍ ଚୁମ୍ବକୀୟ କ୍ଷେତ୍ର ସୃଷ୍ଟି କରେ । ମାତ୍ର କେତେକ ପଦାର୍ଥର ପରମାଣୁରେ ଇଲେକ୍ଟ୍ରନ୍‌ଗୁଡ଼ିକ ଯୋଡ଼ି ଯୋଡ଼ି ହୋଇଥାନ୍ତି ଏବଂ ଏହି ଯୋଡ଼ାର ଇଲେକ୍ଟ୍ରନ୍‌ଦ୍ୱୟ ପରସ୍ପରର ବିପରୀତ ଦିଗରେ ସ୍ପିନ୍ କରିଥାଏ ଓ ବିପରୀତ ଦିଗରେ ଘୂରିଥାଏ । ଏଣୁ ଏହି ଦୁଇଟିର ଚୁମ୍ବକୀୟ କ୍ଷେତ୍ର ପରସ୍ପରକୁ କାଟି ଦେଇଥାଏ ଏବଂ ମୋଟ ଚୁମ୍ବକୀୟ କ୍ଷେତ୍ର ଶୂନ ହୋଇଥାଏ । ଫଳରେ ଏହି ପଦାର୍ଥଗୁଡ଼ିକର ଚୁମ୍ବକୀୟ ଗୁଣ ନଥାଏ ।

ଅନ୍ୟ ଅର୍ଥରେ ଯେଉଁ ପଦାର୍ଥର ପରମାଣୁରେ ଅଯୋଡ଼ା ଇଲେକ୍ଟ୍ରନ୍ ଥାଏ, ତାହା ଚୁମ୍ବକୀୟ ଗୁଣ ହାସଲ କରିଥାଏ । ଲୌହ, କୋବାଲ୍ଟ, ନିକେଲ୍ ଆଦି ପଦାର୍ଥର ପରମାଣୁରେ ଅଧିକ ସଂଖ୍ୟକ ଅଯୋଡ଼ା ଇଲେକ୍ଟ୍ରନ୍ ଥିବାରୁ ଏଗୁଡ଼ିକର ଶକ୍ତିଶାଳୀ ଚୁମ୍ବକୀୟ କ୍ଷେତ୍ର ଥାଏ ।



# ଚୁମ୍ବକର ପ୍ରକାରଭେଦ

ଦୁଇ ପ୍ରକାର ଚୁମ୍ବକ ଅଛି । ଏହା ହେଉଛି:

1. ଅସ୍ଥାୟୀ ଚୁମ୍ବକ (Temporary magnet)

2. ସ୍ଥାୟୀ ଚୁମ୍ବକ (Permanent magnet)

## ଅସ୍ଥାୟୀ ଚୁମ୍ବକ

ଏହି ନାମରୁ ଜଣାପଡୁଛି ଯେ ଏହା ଅସ୍ଥାୟୀ ଭାବରେ ଚୁମ୍ବକୀୟ ଗୁଣ ହାସଲ କରିଥାଏ । ଶକ୍ତିଶାଳୀ ଚୁମ୍ବକୀୟ ବଳ ପ୍ରଭାବରେ ଏଗୁଡ଼ିକ ନିଜର ଚୁମ୍ବକୀୟ ଗୁଣ ପାଇଥାନ୍ତି । ବାହ୍ୟ ଚୁମ୍ବକୀୟ କ୍ଷେତ୍ରର ପ୍ରଭାବରେ ଏହି ପଦାର୍ଥଗୁଡ଼ିକର ପରମାଣୁଗୁଡ଼ିକର ପୁନର୍ବିନ୍ୟାସ ହୋଇ ଚୁମ୍ବକୀୟ ଗୁଣ ମିଳିଥାଏ । ବାହ୍ୟ ଚୁମ୍ବକୀୟ ବଳ ଚାଲିଗଲେ ଏହି ପଦାର୍ଥଗୁଡ଼ିକ ନିଜର ଚୁମ୍ବକୀୟ ଗୁଣ ହରାଇଥାନ୍ତି । ଏହାର ଉଦାହରଣ ହେଉଛି ପେପର କ୍ଲିପ୍, ବିଦ୍ୟୁତ୍ ଚୁମ୍ବକ ଇତ୍ୟାଦି । ଅସ୍ଥାୟୀ ଚୁମ୍ବକ ସାଧାରଣତଃ କୋମଳ ଲୁହାରୁ ନିର୍ମିତ ହୋଇଥାଏ ଏବଂ ସହଜରେ ଏହାର ଚୁମ୍ବକତ୍ୱ ହାସଲ ହୋଇଥାଏ ।

## ସ୍ଥାୟୀ ଚୁମ୍ବକ

ସ୍ଥାୟୀ ଚୁମ୍ବକଗୁଡ଼ିକ ସେମାନଙ୍କର ଚୁମ୍ବକତ୍ୱକୁ ବହୁତ ସମୟ ପର୍ଯ୍ୟନ୍ତ ରଖିପାରିଥାଏ । ପ୍ରାକୃତିକ ଉପାୟରେ ଉପଲବ୍ଧ ଲୋଡ଼ଷ୍ଟୋନ୍ ଓ ମାଗ୍ନେଟାଇଟ୍ ହେଉଛି ଏହାର ଉଦାହରଣ । ଏହାକୁ ମଧ୍ୟ ବିଭିନ୍ନ ଧାତୁରୁ କୃତ୍ରିମ ଉପାୟରେ ପ୍ରସ୍ତୁତ କରାଯାଇଥାଏ । ଏଗୁଡ଼ିକୁ ତିନି ଭାଗରେ ବିଭକ୍ତ କରାଯାଇଛି । ଯଥା-

୧. ଆଲ୍‌ନିକୋ

୨. ନିଓଡିମିୟମ୍ ଆଇରନ୍ ବୋରୋନ୍ ଓ ସାମାରିୟମ୍ କୋବାଲ୍ଟ

୩. ସିରାମିକ୍ କିମ୍ବା ଫେରାଇଟ୍

ଆଲ୍‌ନିକୋ (Alnico) ହେଉଛି ଆଲୁମିନିୟମ୍, ନିକେଲ୍ ଓ କୋବାଲ୍ଟର ମିଶ୍ରଧାତୁ ।

ଏହା ସାଧାରଣତଃ ସ୍ଥାୟୀ ଚୁମ୍ବକ ଭାବେ ବହୁଳଭାବେ ବ୍ୟବହୃତ ହୋଇଥାଏ, କିନ୍ତୁ ଏହାର ଚୁମ୍ବକତ୍ୱ ଅତି ବେଶୀ ନୁହେଁ । ଏହାର ଚୁମ୍ବକତ୍ୱକୁ ସହଜରେ ବାହାର କରାଯାଇପାରିବ ।

ନିଓଡ଼ିମିୟମ୍, ଲୁହା ଓ ବୋରୋନ୍‌ର ଏକ ମିଶ୍ରଧାତୁ ହେଉଛି ନିଓଡ଼ିମିୟମ୍ ଆଇରନ୍ ବୋରୋନ୍ । ସମରିୟମ୍ କୋବାଲ୍‌ଟ ହେଉଛି ସମରିୟମ୍ ଓ କୋବାଲ୍‌ଟର ମିଶ୍ରଧାତୁ । ଏଗୁଡିକ ହେଉଛି ଅତି ଶକ୍ତିଶାଳୀ ସ୍ଥାୟୀ ଚୁମ୍ବକ । ଏଗୁଡିକର ଚୁମ୍ବକତ୍ୱକୁ ସହଜରେ ନଷ୍ଟ କରି ହେବପାହିଁ । ଏଗୁଡିକୁ ମଧ୍ୟ 'ବିରଳ ମୃତ୍ତିକା ଚୁମ୍ବକ' କୁହାଯାଏ । କାରଣ ଏଥିରେ ଥିବା ମୌଳିକ ପଦାର୍ଥଗୁଡିକ ପର୍ଯ୍ୟାୟ ସାରଣୀର ଲାଥାନଏଡ୍ ଗ୍ରୁପ୍ (କିମ୍ବା ବିରଳ ମୃତ୍ତିକା ମୌଳିକ ପଦାର୍ଥ)ରେ ରହିଛି ।

ସିରାମିକ୍ କିମ୍ବା ଫେରାଇଟ୍ ଚୁମ୍ବକଗୁଡିକ ପ୍ରକୃତିରେ ଉପଲବ୍ଧ ହୁଏନାହିଁ । ଏଗୁଡିକ ପରୀକ୍ଷାଗାର କିମ୍ବା କାରଖାନାରେ ପ୍ରସ୍ତୁତ କରାଯାଏ । ଏଗୁଡିକ ୧୯୬୦ ଦଶକରେ ବିକଶିତ ହୋଇ ବହୁଳ ଭାବେ ବ୍ୟବହୃତ ହେଉଛି । ଏଗୁଡିକ ଶକ୍ତିଶାଳୀ ଚୁମ୍ବକ, ମାତ୍ର ଏଗୁଡିକର ସାମର୍ଥ୍ୟ ତାପମାନ ସହିତ ବଦଳିଥାଏ ।

ସ୍ଥାୟୀ ଚୁମ୍ବକକୁ ଚୁମ୍ବକରେ ପରିଣତ କରିବାରେ ଅଧିକ କଷ୍ଟ ହୋଇଥାଏ । ମାତ୍ର ଥରେ ଚୁମ୍ବକରେ ପରିଣତ ହେଲେ, ଏହା ନିଜର ଚୁମ୍ବକତ୍ୱକୁ ବହୁ ସମୟ ଧରି ରଖିପାରିଥାଏ ।




ଇସ୍ପାତ ଅପେକ୍ଷା ଲୁହା ଅତି ସହଜରେ ଚୁମ୍ବକରେ ପରିଣତ ହୋଇଥାଏ




ଇସ୍ପାତ ଅପେକ୍ଷା ଲୁହା ବହୁତ ଶୀଘ୍ର ଚୁମ୍ବକତ୍ୱ ହରାଇଥାଏ

# ଚୁମ୍ବକୀୟ କମ୍ପାସ୍

ଗୋଟିଏ ଚୁମ୍ବକୀୟ କମ୍ପାସ୍‌ରେ ଚୁମ୍ବକୀୟ ସୂଚୀ (needle)ଟି ଏପରିଭାବରେ ରଖାଯାଇଥାଏ ଯେ ଏହା ମୁକ୍ତ ଭାବରେ ଘୂରିପାରିଥାଏ । କମ୍ପାସ୍‌କୁ କୌଣସି ଜାଗାରେ ରଖିଲେ, ସୂଚୀଟି ସର୍ବଦା ଉତ୍ତର-ଦକ୍ଷିଣ ଦିଗରେ ରହିଥାଏ । ସୂଚୀର ଦୁଇପଟକୁ ଅଲଗା ରଙ୍ଗ କରାଯାଇଥାଏ, ଯାହାଦ୍ୱାରା କେଉଁଟି ଏହାର ଉତ୍ତରମେରୁ ଓ କେଉଁଟି ଦକ୍ଷିଣମେରୁ ଆମେ ସହଜରେ ଜାଣିପାରିଥାଉ ।



ଜାହାଜ କମ୍ପାସ୍

ଅଜଣା ସ୍ଥାନକୁ ଗଲେ କମ୍ପାସ୍ ସାହାଯ୍ୟରେ ଦିଗ ଜାଣିହୋଇଥାଏ । ବିଶେଷକରି ସମୁଦ୍ର ଜଳଯାତ୍ରା ପାଇଁ ଏହା ନିହାତି ଜରୁରୀ ହୋଇଥାଏ । ଯେଉଁ ଦୁଇପ୍ରକାର କମ୍ପାସ୍ ସାଧାରଣଭାବେ ବ୍ୟବହୃତ ହୋଇଥାଏ, ତାହା ହେଉଛି 'ଜାହାଜ୍ କମ୍ପାସ୍ ଓ ପକେଟ୍ କମ୍ପାସ୍' ।



ପକେଟ୍ କମ୍ପାସ୍

(୧) ଗୋଟିଏ ଇସ୍ପାତ୍ ନିର୍ମିତ ଦାଢିକାଟିବା ବ୍ଲେଡ୍ ନିଅ ଏବଂ ଗୋଟିଏ ଚୁମ୍ବକ ଦ୍ୱାରା ଘଷି ଏହାକୁ ଗୋଟିଏ ଚୁମ୍ବକରେ ପରିଣତ କର । ବର୍ତ୍ତମାନ ଆମେ ଗୋଟିଏ 'ରେଜର୍ ବ୍ଲେଡ୍ କମ୍ପାସ୍' ପାଇଗଲେ । ଏହାର ଉତ୍ତରମେରୁକୁ ଚିହ୍ନିତ କରି ଏହାକୁ ଗୋଟିଏ କର୍କ ଉପରେ ରଖ । କର୍କକୁ ଜଳରେ ଭସାଅ । ଧ୍ୟାନ ରଖ ଯେପରି ଏହା ନିକଟରେ ଅନ୍ୟ କୌଣସି ଚୁମ୍ବକ କିମ୍ବା ଚୁମ୍ବକୀୟ ପଦାର୍ଥ ନରହୁ । କର୍କର ଗତି ବନ୍ଦ ହୋଇଗଲେ ରେଜର୍ ବ୍ଲେଡ୍ ଉତ୍ତର-ଦକ୍ଷିଣ ଦିଗକୁ ସୂଚିତ କରିବ ।

(୨) ପୂର୍ବ ପରି ଗୋଟିଏ ରେଜର୍ ବ୍ଲେଡ୍‌କୁ ଚୁମ୍ବକରେ ପରିଣତ କର । ଏଥିରେ ଉତ୍ତରମେରୁକୁ ଚିହ୍ନଟ କର । ରେଜର୍ ବ୍ଲେଡ୍‌ର ମଧ୍ୟଭାଗରେ ଗୋଟିଏ ଓଜନିଆ ଜିନିଷ ରଖ ଏବଂ କାଗଜ ସାହାଯ୍ୟରେ ଏହାକୁ ଜାବି କରିରଖ । ଗୋଟିଏ ଗୋଲାକାର କାର୍ଡବୋର୍ଡରେ ରେଜର୍ ବ୍ଲେଡ୍‌କୁ ଅଠା ଲଗାଇ ରଖ ଏବଂ କାର୍ଡବୋର୍ଡରେ ଉତ୍ତରମେରୁକୁ ସୂଚିତ କର । ବର୍ତ୍ତମାନ ରେଜର୍ ବ୍ଲେଡ୍ ସହ କାର୍ଡବୋର୍ଡକୁ କର୍କରେ ଲଗାଯାଇଥିବା ପିନ୍‌ରେ ଝୁଲାଅ, ଫଳରେ ଏହା ମୁକ୍ତ ଭାବରେ ଘୂରିପାରିବ । ବର୍ତ୍ତମାନ ତୁମେ ଗୋଟିଏ ସରଳ କମ୍ପାସ୍ ତିଆରି କରିଦେଲ । ତୁମର କମ୍ପାସ୍‌କୁ ଗୋଟିଏ କାର୍ଡବୋର୍ଡ ବାକ୍ସରେ ରଖ, ଫଳରେ ଏହା ପବନରେ ଉଡିଯିବ ନାହିଁ ।



ରେଜର୍ ବ୍ଲେଡ୍ ଚୁମ୍ବକ

□□□

# ଚୁମ୍ବକର ଯତ୍ନ

ଯଦି ଉପଯୁକ୍ତ ଯତ୍ନ ନିଆ ନଯାଏ, ତା'ହେଲେ ଚୁମ୍ବକ ତା'ର ଚୁମ୍ବକତ୍ୱକୁ ହରାଇ ଦେବ । ନିମ୍ନଲିଖିତ ପ୍ରତି ସାବଧାନ ହେବା ଦରକାର:

୧. ଚୁମ୍ବକକୁ କେବେ ଗରମ କରିବ ନାହିଁ କିମ୍ବା ଏହାକୁ ନିଆଁ ନିକଟରେ ରଖିବ ନାହିଁ ।

୨. ଚୁମ୍ବକକୁ ତଳେ ପକାଇ ଦେବନାହିଁ କିମ୍ବା ଏହାକୁ ପିଟିବ ନାହିଁ ।

୩. ଯେତେବେଳେ ଚୁମ୍ବକର ବ୍ୟବହାର ହେଉନାହିଁ, ଏହାକୁ ଚୁମ୍ବକୀୟ ଖୋଳ (Magnetic keeper) ଦ୍ୱାରା ସୁରକ୍ଷିତ ରଖିବ ।






□□□

# ଚୁମ୍ବକତ୍ୱକୁ କିପରି ନଷ୍ଟ କରାଯିବ

ଗୋଟିଏ ଚୁମ୍ବକକୁ ଗରମ କରି କିମ୍ବା ହାତୁଡିରେ ବାରମ୍ବାର ପିଟି କିମ୍ବା ବାରମ୍ବାର ଏହାକୁ ଭୂଇଁରେ କଚାଡି ଏହାର ଚୁମ୍ବକତ୍ୱକୁ ନଷ୍ଟ କରାଯାଇପାରିବ । ବୈଦ୍ୟୁତିକ ଉପାୟରେ ମଧ୍ୟ ଚୁମ୍ବକତ୍ୱକୁ ନଷ୍ଟ କରାଯାଇପାରିବ ।

ଗୋଟିଏ ଚୁମ୍ବକ କେତୋଟି କାଗଜ କ୍ଲିପ୍ ଉଠାଇ ପାରୁଛି, ସେଥିରୁ ଏହାର ସାମର୍ଥ୍ୟ ଜଣାପଡିବ । ଯେତେବେଳେ ଏହାର ଚୁମ୍ବକତ୍ୱ ସମ୍ପୂର୍ଣ୍ଣ ରୂପେ ନଷ୍ଟ ହୋଇଯିବ, ସେତେବେଳେ ଏହା ଆଉ କୌଣସି କାଗଜ କ୍ଲିପ୍‌କୁ ଉଠାଇ ପାରିବ ନାହିଁ । ନିମ୍ନ ପରୀକ୍ଷା କରାଯାଇପାରିବ ।

୧. ଗୋଟିଏ ଚୁମ୍ବକର ସାମର୍ଥ୍ୟକୁ ପରୀକ୍ଷା କର । ଏହାକୁ ଅଳ୍ପ ସମୟ ପାଇଁ ଧୀରେ ଗରମ କର ଏବଂ ଏହାର ସାମର୍ଥ୍ୟ ପରୀକ୍ଷା କର । ଚୁମ୍ବକକୁ ଅଳ୍ପ ସମୟ ପାଇଁ ଜୋର୍‌ରେ ଗରମ କରି ଏହାର ସାମର୍ଥ୍ୟ ପରୀକ୍ଷା କର ।

୨. ଅନ୍ୟ ଗୋଟିଏ ଚୁମ୍ବକ ନିଅ ଓ ଏହାର ସାମର୍ଥ୍ୟ ପରୀକ୍ଷା କର । ଗୋଟିଏ ହାତୁଡି




(ଚୁମ୍ବକତ୍ୱ ନଷ୍ଟ ହେବାର ବିଭିନ୍ନ ଉପାୟ)

ସାହାଯ୍ୟରେ ଏହାକୁ ଦଶଥର ପିଟ ଓ ଏହାପରେ ଏହାର ସାମର୍ଥ୍ୟ ପରୀକ୍ଷାକର । ଏହି ପରୀକ୍ଷାକୁ ଦୁଇ ଥର ପୁନରାବୃତ୍ତି କର ଏବଂ ପ୍ରତ୍ୟେକ ଥର ଏହାର ସାମର୍ଥ୍ୟକୁ ପରୀକ୍ଷାକର ।

୩. ଅନ୍ୟ ଗୋଟିଏ ଚୁମ୍ବକର ସାମର୍ଥ୍ୟ ପରୀକ୍ଷା କର । ଚୁମ୍ବକକୁ କିଛି ଉଚ୍ଚରୁ ତଳକୁ ଦଶଥର ପକାଅ ଏବଂ ଏହାର ସାମର୍ଥ୍ୟ ପରୀକ୍ଷା କର । ଏହାକୁ ଦୁଇଥର ପୁନରାବୃତ୍ତି କର ଏବଂ ପ୍ରତ୍ୟେକଥର ଏହାର ସାମର୍ଥ୍ୟକୁ ପରୀକ୍ଷା କର ।



# ବୈଦ୍ୟୁତିକ ଚୁମ୍ବକ

ବୈଦ୍ୟୁତିକ ଉପାୟରେ ମଧ୍ୟ ଚୁମ୍ବକ ନିର୍ମାଣ କରିହେବ । ଶିଳ୍ପରେ ସାଧାରଣତଃ ଏହି ଉପାୟରେ ଚୁମ୍ବକ ତିଆରି ହୋଇଥାଏ । ଏହି ପଦ୍ଧତିରେ ନିର୍ମିତ ଚୁମ୍ବକକୁ 'ବୈଦ୍ୟୁତିକ ଚୁମ୍ବକ' (Electromagnet) କୁହାଯାଏ । ଆମେ ନିମ୍ନ ଉପାୟରେ ବୈଦ୍ୟୁତିକ ଚୁମ୍ବକ ନିର୍ମାଣ କରିପାରିବା ।

୧. ଗୋଟିଏ ଇସ୍ପାତ୍ ଦଣ୍ଡ ଚାରିପଟେ ଗୋଟିଏ ତମ୍ବା ତାରକୁ ୩୦ ଥର ଗୁଡ଼ାଅ, ଯେପରି ଗୋଟିଏ ଅନ୍ୟ ଉପରେ ଚଢ଼ିକରି ରହିବନାହିଁ । ଗୋଟିଏ ଶୁଷ୍କ ବ୍ୟାଟେରିର ଦୁଇ ମେରୁ ସହ ତାରର ଦୁଇ ମୁଣ୍ଡକୁ ସଂଯୋଗ କର । ବର୍ତ୍ତମାନ ତାର ଦେଇ ବିଦ୍ୟୁତ୍ କରେଣ୍ଟ୍ ପ୍ରବାହିତ ହେବ । କିଛି ସମୟପରେ ବ୍ୟାଟେରିରୁ ତାରକୁ ବାହାର କରିଦିଅ । ଇସ୍ପାତ୍ ଦଣ୍ଡକୁ ଗୋଟିଏ କମ୍ପାସ୍ ସାହାଯ୍ୟରେ ପରୀକ୍ଷା କର । ଏହା ବର୍ତ୍ତମାନ ଗୋଟିଏ ଚୁମ୍ବକ ହୋଇଯାଇଥିବ ।




(ବୈଦ୍ୟୁତିକ ଚୁମ୍ବକ ନିର୍ମାଣ ପଦ୍ଧତି)

ବର୍ତ୍ତମାନ ନିମ୍ନରେ ଦିଆଯାଇଥିବା ଉପାୟମାନ କରି ଚୁମ୍ବକର ସାମର୍ଥ୍ୟ ବଢୁଛି ନା ନାହିଁ ପରୀକ୍ଷା କର ।

(କ) ବ୍ୟାଟେରି ସଂଖ୍ୟା ବଢ଼ାଅ

(ଖ) କରେଣ୍ଟ୍ ପ୍ରବାହିତ ହେଉଥିବା ସମୟକୁ ବଢ଼ାଅ

(ଗ) ଇସ୍ପାତଦଣ୍ଡ ଘରିପଟେ ତାରକୁ ଅଧିକ ଥର ଗୁଡାଅ ।

ଏହା ନିଶ୍ଚିତ ଯେ ପ୍ରତ୍ୟେକ ଉପାୟରେ ଚୁମ୍ବକର ସାମର୍ଥ୍ୟ ବଢିବ । ବର୍ତ୍ତମାନ ତାରରେ କରେଣ୍ଟ୍‌ର ଦିଗ ବଦଳାଅ (ତାରର ଦୁଇ ମୁଣ୍ଡ ବ୍ୟାଟେରିର ଯେଉଁ ଦୁଇ ମେରୁରେ ଲାଗିଥିଲା, ତାକୁ ବଦଳାଇ ଦେଲେ କରେଣ୍ଟ୍‌ର ଦିଗ ବଦଳିଯିବ) । ବର୍ତ୍ତମାନ କ'ଣ ଲକ୍ଷ୍ୟ କଲ ? ଚୁମ୍ବକର ମେରୁ ଦୁଇଟି ବଦଳିଯାଇଥିବ ।

୨. ଗୋଟିଏ ଲୁହାକଣ୍ଟା ଘରିପଟେ ଗୋଟିଏ ରୋଧିତ (insulated) ତମ୍ବା ତାରକୁ ଅତିକମ୍‌ରେ ଦଶଥର ଗୁଡାଅ । ତାରର A ପଟକୁ ଶୁଷ୍କ ବ୍ୟାଟେରିର ଋଣାତ୍ମକ ମେରୁ ସହ ଯୋଗକର । ସେହି ତାରର B ପଟକୁ ଗୋଟିଏ ସୁଇଚ୍ ସହ ସଂଯୋଗ କର । ସୁଇଚ୍‌କୁ ଅନ୍ୟ ଗୋଟିଏ ତାର C ଦ୍ୱାରା ବ୍ୟାଟେରିର ଧନାତ୍ମକ ମେରୁକୁ ସଂଯୋଗ କର ।

ଟେବୁଲ୍ ଉପରେ ଅଳ୍ପ କେତୋଟି କାଗଜ କ୍ଲିପ୍ ରଖ । ସୁଇଚ୍‌କୁ ବନ୍ଦ ନକରି କାଗଜ କ୍ଲିପ୍‌ଗୁଡିକୁ କଣ୍ଟା ନିକଟକୁ ନିଅ, କ'ଣ ହେବ ? ଲୁହାକଣ୍ଟା କାଗଜ କ୍ଲିପ୍‌ଗୁଡିକୁ ଟାଣିବ ନାହିଁ । କାରଣ କଣ୍ଟାଟି ଚୁମ୍ବକରେ ପରିଣତ ହୋଇନାହିଁ ।



(ବୈଦ୍ୟୁତିକ ଚୁମ୍ବକ)

ବର୍ତ୍ତମାନ ସୁଇଚ୍‌କୁ ବନ୍ଦକର । ଏହା ଫଳରେ କଣ୍ଟା ଘରିପଟେ ଥିବା ତାର କୁଣ୍ଡଳୀରେ ବିଦ୍ୟୁତ୍ କରେଣ୍ଟ୍ ପ୍ରବାହିତ ହେବ । ବର୍ତ୍ତମାନ କଣ୍ଟା ନିକଟରେ କାଗଜ କ୍ଲିପ୍‌ଗୁଡିକୁ ଧର, କ'ଣ ଦେଖିବ ? କେତେଗୁଡିଏ କ୍ଲିପ୍ କଣ୍ଟା ଆଡକୁ ଆକର୍ଷିତ ହୋଇ ତା'ସହିତ ଲାଖିଯିବ । ଏଥିରୁ ଜଣାପଡୁଛି ଯେ କଣ୍ଟାଟି ବର୍ତ୍ତମାନ ଗୋଟିଏ ଚୁମ୍ବକରେ ପରିଣତ ହୋଇଯାଇଛି । କଣ୍ଟା ଚୁମ୍ବକଟି କେତୋଟି କ୍ଲିପ୍‌କୁ ଟାଣିଛି, ତାକୁ ମନେରଖ ।

ବର୍ତ୍ତମାନ ସୁଇଚ୍‌କୁ ଖୋଲିଦେଇ କରେଣ୍ଟ୍ ପ୍ରବାହକୁ ବନ୍ଦକର, କ'ଣ ହେବ ? କାଗଜ କ୍ଲିପ୍‌ଗୁଡିକ କଣ୍ଟାରୁ ଖସିପଡିବ । ଏଥିରୁ ଜଣାପଡୁଛି ଯେ କଣ୍ଟାଟିରେ ବର୍ତ୍ତମାନ ଚୁମ୍ବକୀୟ ଗୁଣ ନାହିଁ । ଏହାର ଅର୍ଥ ହେଉଛି ବିଦ୍ୟୁତ୍ କରେଣ୍ଟ୍ ଚୁମ୍ବକୀୟ ପଦାର୍ଥରେ ଚୁମ୍ବକତ୍ୱ ହାସଲ କରାଏ ଏବଂ ବିଦ୍ୟୁତ୍ କରେଣ୍ଟ୍ ପ୍ରବାହିତ ହେଉଥିବା ପର୍ଯ୍ୟନ୍ତ କେବଳ ଏହା ଚୁମ୍ବକ ଭାବେ କାମ କରିଥାଏ ।

ବର୍ତ୍ତମାନ କଣ୍ଟା ଚାରିପଟେ ତାରକୁ ଅଧିକ ଥର ଗୁଡାଇ ପରୀକ୍ଷାର ପୁନରାବୃତ୍ତି କର । ବୈଦ୍ୟୁତିକ ଚୁମ୍ବକର ସାମର୍ଥ୍ୟ ଏହାଦ୍ୱାରା ବୃଦ୍ଧି ପାଇବ । ଏହାପରେ ଦୁଇଟି ବ୍ୟାଟେରି ନେଇ ପରୀକ୍ଷାର ପୁନରାବୃତ୍ତି କର । ଏହି କ୍ଷେତ୍ରରେ ମଧ୍ୟ ଚୁମ୍ବକର ସାମର୍ଥ୍ୟ ବଢିବ ।

ଏଥିରୁ ଆମେ ଜାଣିଲେ ଯେ ତାରକୁ ଅଧିକ ଥର ଗୁଡାଇଲେ କିମ୍ବା ବ୍ୟାଟେରି ସଂଖ୍ୟା ବଢାଇଲେ ବୈଦ୍ୟୁତିକ ଚୁମ୍ବକର ସାମର୍ଥ୍ୟ ବଢିଥାଏ ।




ଗୋଟିଏ ଲୌହ ଚୁମ୍ବକୀୟ ପଦାର୍ଥ ମଧ୍ୟଦେଇ ସିଧାସଳଖ କରେଣ୍ଟ୍ ପ୍ରବାହିତ କରି ମଧ୍ୟ ଆମେ ବୈଦ୍ୟୁତିକ ଚୁମ୍ବକ ତିଆରି କରିବା (ନିମ୍ନ ଚିତ୍ର ଦେଖ) ।



# ବିଦ୍ୟୁତ୍ ଓ ଚୁମ୍ବକ

ବିଦ୍ୟୁତ୍ ପ୍ରବାହିତ ହେଉଥିବା ତାର ନିକଟରେ ଗୋଟିଏ କମ୍ପାସ୍ ରଖିଲେ କମ୍ପାସ୍‌ର ସୂଚୀର ଦିଗ ପରିବର୍ତ୍ତନ ହେବାର ଲକ୍ଷ୍ୟ କରିବ । ଏହା କାହିଁକି ହେଉଛି ? ଗୋଟିଏ ଦଣ୍ଡ ଚୁମ୍ବକ ନିକଟକୁ କମ୍ପାସ୍‌ଟିଏ ନେଲେ କମ୍ପାସ୍‌ର ସୂଚୀ ଚୁମ୍ବକର ଚୁମ୍ବକୀୟ କ୍ଷେତ୍ର ଆଡକୁ ସୂଚୀତ କରେ । ଏହାର ଅର୍ଥ ହେଉଛି ବିଦ୍ୟୁତ୍ କରେଣ୍ଟ୍ ତା'ର ଚାରିପଟେ ମଧ୍ୟ ଗୋଟିଏ ଚୁମ୍ବକୀୟ କ୍ଷେତ୍ର ସୃଷ୍ଟି କରୁଛି । ଏଣୁ ବିଦ୍ୟୁତ୍ ପ୍ରବାହିତ ହେଉଥିବା ତାର ନିକଟରେ କମ୍ପାସ୍ ରଖିଲେ, ଏହାର ସୂଚୀ ଉତ୍ତର ଦିଗକୁ ନ ଦର୍ଶାଇ କରେଣ୍ଟ୍‌ର ଚୁମ୍ବକୀୟ କ୍ଷେତ୍ର ଆଡକୁ ଦର୍ଶାଇଥାଏ ।




ବାସ୍ତବରେ ଏହା ଆକସ୍ମିକ ଭାବେ ଜଣାପଡିଥିଲା । ୧୮୨୦ ମସିହାରେ ଡେନ୍‌ମାର୍କର ପ୍ରଫେସର ହାନ୍‌ସ କ୍ରିଷ୍ଟିୟାନ୍ ଓର୍ଷ୍ଟେଡ୍ ଶ୍ରେଣୀ କକ୍ଷରେ ଛାତ୍ରମାନଙ୍କୁ ବିଦ୍ୟୁତ୍ ଉପରେ କିଛି ପରୀକ୍ଷା ଦେଖାଉଥିଲେ । ତାଙ୍କ ଅଜାଣତରେ ଟେବୁଲ୍ ଉପରେ ଗୋଟିଏ କମ୍ପାସ୍ ଥିଲା । ତାରରେ ବିଦ୍ୟୁତ୍ କରେଣ୍ଟ୍ ପ୍ରବାହ ହେବାପରେ ସେ ଦେଖିଲେ ଯେ କମ୍ପାସ୍‌ର ସୂଚୀର ଦିଗ ପରିବର୍ତ୍ତନ ହେଉଛି । ଅନେକଥର ଏହି ପରୀକ୍ଷା କରିବା ପରେ ସେ ଜାଣିପାରିଲେ ଯେ କରେଣ୍ଟ୍‌ର ଚୁମ୍ବକୀୟ କ୍ଷେତ୍ର ଯୋଗୁଁ ଏପରି ଘଟୁଛି ।

# ବିଦ୍ୟୁତ୍-ଚୁମ୍ବକୀୟ ପ୍ରେରଣ

ବିଦ୍ୟୁତ୍ ସାହାଯ୍ୟରେ କିପରି ଚୁମ୍ବକ ତିଆରି ହୁଏ, ତାହା ଆମେ ଜାଣିଲେ । ଯଦି ବିଦ୍ୟୁତ୍ କରେଣ୍ଟ୍ ଚୁମ୍ବକତ୍ୱ ସୃଷ୍ଟି କରିପାରୁଛି, ତାହାହେଲେ ଚୁମ୍ବକ କ'ଣ ବିଦ୍ୟୁତ୍ ସୃଷ୍ଟି କରିପାରିବ ନାହିଁ ? ଏଥିପାଇଁ ଗୋଟିଏ ପରୀକ୍ଷା କରିବା । ଗୋଟିଏ ଚୁମ୍ବକୀୟ କ୍ଷେତ୍ର ଭିତରେ ଗୋଟିଏ ତାରକୁ ଘୂରାଇଲେ, ସେଥିରେ ବିଦ୍ୟୁତ୍ ସୃଷ୍ଟି ହେବ । ତାରର ଦୁଇମୁଣ୍ଡକୁ ଗୋଟିଏ ଗାଲଭାନୋମିଟର (ବିଦ୍ୟୁତ୍ କରେଣ୍ଟ୍ ସୂଚକ ଯନ୍ତ୍ର) ସହ ସଂଯୋଗ କଲେ, ଆମେ ବିଦ୍ୟୁତ୍‌କୁ ଜାଣିପାରିବା । ପୁନଶ୍ଚ ଗୋଟିଏ ତାରକୁଣ୍ଡଳୀ ମଧ୍ୟରେ ଚୁମ୍ବକଟିଏ ଘୂରାଇଲେ ମଧ୍ୟ ତାରରେ ବିଦ୍ୟୁତ୍ କରେଣ୍ଟ୍ ପ୍ରବାହିତ ହେବ । ଏହି ପ୍ରକ୍ରିୟାକୁ ବିଦ୍ୟୁତ୍ ଚୁମ୍ବକୀୟ ପ୍ରେରଣ (electromagnetic induction) କୁହାଯାଏ । ଏହାକୁ ବିଶିଷ୍ଟ ଇଂରେଜୀ ବୈଜ୍ଞାନିକ ମାଇକେଲ୍ ଫାରାଡେ ୧୮୩୧ ମସିହାରେ ଆବିଷ୍କାର କରିଥିଲେ ।

ଆମ ପାଇଁ ବିଦ୍ୟୁତ୍ ଚୁମ୍ବକୀୟ ପ୍ରେରଣ ଆବିଷ୍କାର ହେଉଛି ବଡ଼ ଉଲ୍ଲେଖନୀୟ । କାରଣ ଏହି ନିୟମରେ ଜେନେରେଟର୍ କାମ କରିଥାଏ । ଜେନେରେଟ୍‌ର୍ ବିଦ୍ୟୁତ୍‌ଶକ୍ତି ଉତ୍ପାଦନ କରେ । ଆମର ଦୈନନ୍ଦିନ ଜୀବନରେ ବିଦ୍ୟୁତ୍‌ର ବ୍ୟବହାର ସମସ୍ତଙ୍କୁ ଜଣା ।






(ବିଦ୍ୟୁତ୍ ଚୁମ୍ବକୀୟ ପ୍ରେରଣ)

ଆମ ପୂର୍ବ ପରୀକ୍ଷା ପରି ଜେନେରେଟର୍ କାମ କରିଥାଏ । ଜେନେରେଟର୍ ଭିତରେ ଗୋଟିଏ ଚୁମ୍ବକ, ତାରକୁଣ୍ଡଳୀ ଏବଂ ଯାନ୍ତ୍ରିକଶକ୍ତିର ଉତ୍ସ ଥାଏ । ଯାନ୍ତ୍ରିକଶକ୍ତି ଦ୍ୱାରା କୁଣ୍ଡଳୀଟି ଚୁମ୍ବକର ଚୁମ୍ବକୀୟ କ୍ଷେତ୍ର ଭିତରେ ଘୂରିଥାଏ ଏବଂ ଫଳରେ ତାର କୁଣ୍ଡଳୀରେ ବିଦ୍ୟୁତ୍ ସୃଷ୍ଟି ହୋଇଥାଏ । ବଡ଼ ବଡ଼ ଜେନେରେଟର୍‌ରେ ଏହାର ବିପରୀତ ହୋଇଥାଏ । ତାର କୁଣ୍ଡଳୀ (ଷ୍ଟେଟର) ସ୍ଥିର ଥାଏ ଏବଂ ଯାନ୍ତ୍ରିକ ଶକ୍ତି ଗୋଟିଏ ବିଦ୍ୟୁତ୍ ଚୁମ୍ବକ(ରୋଟର)କୁ ଏହା ମଧ୍ୟରେ ଘୂରାଇଥାଏ । ଫଳରେ ତାର କୁଣ୍ଡଳୀରେ ବିଦ୍ୟୁତ୍ ସୃଷ୍ଟି ହୋଇଥାଏ । ବଡ଼ ବଡ଼ ବିଦ୍ୟୁତ୍ କେନ୍ଦ୍ରରେ ଏହି ଉପାୟରେ ବିଦ୍ୟୁତ୍ ଉତ୍ପାଦନ କରାଯାଏ । ଯାନ୍ତ୍ରିକ ଶକ୍ତିର ଉତ୍ସ ମଧ୍ୟ ବିଭିନ୍ନ ପ୍ରକାର । ଜେନେରେଟର୍ ଗୋଟିଏ ଟରବାଇନ୍ ସହ ସଂଯୋଗ ହୋଇଥାଏ । ଟରବାଇନ୍‌କୁ ବିଭିନ୍ନ ଉପାୟରେ ଘୂରାଯାଇଥାଏ । ଉଦାହରଣସ୍ୱରୂପ, ତାପଜ ବିଦ୍ୟୁତ୍ କେନ୍ଦ୍ରରେ (ତାଳଚେରରେ ଥିବା କେନ୍ଦ୍ର) ବାଷ୍ପ ଦ୍ୱାରା ଟରବାଇନ୍ ଘୂରୁଥିବା ବେଳେ ଜଳବିଦ୍ୟୁତ୍ କେନ୍ଦ୍ରରେ (ହୀରାକୁଦରେ ଥିବା କେନ୍ଦ୍ର) ଉପରୁ ପଡୁଥିବା ଜଳଦ୍ୱାରା ଏହା ଘୂରିଥାଏ । ସେହିପରି ପବନ ବିଦ୍ୟୁତ୍ କେନ୍ଦ୍ରରେ ପବନ ଦ୍ୱାରା ଟରବାଇନ୍ ଘୂରି ଯାନ୍ତ୍ରିକ ଶକ୍ତି ଯୋଗାଇଥାଏ ।

□□□

# ଚୁମ୍ବକର ବ୍ୟବହାର

ପକେଟ୍ କମ୍ପାସ୍ ଓ ଜାହାଜ କମ୍ପାସ୍ ନିର୍ମାଣ ପାଇଁ ଚୁମ୍ବକ ବ୍ୟବହୃତ ହୁଏ । ଏହା ମଧ୍ଯ ବିଭିନ୍ନ ବୈଦ୍ୟୁତିକ ପରିମାପ ଯନ୍ତ୍ର, ମୋଟର ଓ ଡାଇନାମୋରେ ବ୍ୟବହୃତ ହୋଇଥାଏ ।

ବୈଦ୍ୟୁତିକ ଚୁମ୍ବକର ବିଭିନ୍ନ ବ୍ୟବହାର ନିମ୍ନରେ ଦିଆଗଲା:

୧. ବଡ଼ ବଡ଼ କ୍ରେନ୍ (Crane) ସହିତ ଲାଗିଥିବା ବୈଦ୍ୟୁତିକ ଚୁମ୍ବକ ବହୁତ ଓଜନର ଲୁହାପାତିଆ ଏବଂ ଲୁହାଖଣ୍ଡ (Scrap)କୁ ଗୋଟିଏ ଜାଗାରୁ ଉଠାଇ ଅନ୍ୟ ଜାଗାକୁ ନେଇଥାଏ ।

୨. ଜଣେ ରୋଗୀର ଶରୀରକୁ ପଶି ଯାଇଥିବା ଲୁହା କଣ୍ଟା କିମ୍ବା ଅନ୍ୟ ଚୁମ୍ବକୀୟ ବସ୍ତୁକୁ ବୈଦ୍ୟୁତିକ ଚୁମ୍ବକ ସାହାଯ୍ୟରେ ବାହାର କରାଯାଏ ।

୩. ଅଣ-ଚୁମ୍ବକୀୟ ପଦାର୍ଥ (ଟିଣ, ପିତଳ, ତମ୍ବା ଆଦି)ଠାରୁ ଚୁମ୍ବକୀୟ ପଦାର୍ଥ (ଲୁହା, ଇସ୍ପାତ୍, ନିକେଲ, କୋବାଲ୍‌ଟ ଆଦି)କୁ ଅଲଗା କରିବା ପାଇଁ ବୈଦ୍ୟୁତିକ ଚୁମ୍ବକ ବ୍ୟବହୃତ ହୋଇଥାଏ । ଏହା ଯେଉଁ ଯନ୍ତ୍ରରେ ଲାଗିଥାଏ, ତାକୁ ବିଦ୍ୟୁତ୍-ଚୁମ୍ବକୀୟ ପୃଥକକାରୀ (electromagnetic separator) ଯନ୍ତ୍ର କୁହାଯାଏ ।

୪. ବୈଦ୍ୟୁତିକ ଘଣ୍ଟି, ଟେଲିଫୋନ୍, ଜେନେରେଟର୍ ଓ ମୋଟରରେ ବୈଦ୍ୟୁତିକ ଚୁମ୍ବକ ବ୍ୟବହୃତ ହୋଇଥାଏ ।

୫. ଲାଉଡ୍‌ସ୍ପିକର ଓ ମାଇକ୍ରୋଫୋନରେ ଚୁମ୍ବକ ବ୍ୟବହୃତ ହୋଇଥାଏ ।



(ବୈଦ୍ୟୁତିକ ଚୁମ୍ବକ ଦ୍ୱାରା ଭାରୀ ଜିନିଷ ଉଠାଯାଉଛି)



(ଚୁମ୍ବକୀୟ ଧାତୁ ପୃଥକକାରୀ ଯନ୍ତ୍ର)




(କଲିଙ୍ଗ୍ ବେଲ୍‌ରେ ବୈଦ୍ୟୁତିକ ଚୁମ୍ବକ)



ମୋଟର୍



ଟ୍ରାନ୍ସଫର୍ମର

ବୈଦ୍ୟୁତିକ ମୋଟର୍‌ରେ ଗୋଟିଏ ଚୁମ୍ବକର ଦୁଇ ମେରୁ ମଧ୍ୟରେ ଗୋଟିଏ ତାର କୁଣ୍ଡଳୀ ଥାଏ । ତାର କୁଣ୍ଡଳୀରେ ବିଦ୍ୟୁତ୍ କରେଣ୍ଟ୍ ପ୍ରବାହିତ ହେଲେ, ତା' ଚାରିପଟେ ଚୁମ୍ବକୀୟ କ୍ଷେତ୍ର ସୃଷ୍ଟି ହୁଏ ଏବଂ ଏହା ଚୁମ୍ବକର ଚୁମ୍ବକୀୟ କ୍ଷେତ୍ର ଦ୍ୱାରା ବିକର୍ଷିତ ହୁଏ । ଫଳରେ ତାର କୁଣ୍ଡଳୀ ଘୂରିଥାଏ । ଏହା ହେଉଛି ମୋଟର କାର୍ଯ୍ୟକାରୀର ମୌଳିକ ସୂତ୍ର ।




(ବିଦ୍ୟୁତ୍ ମୋଟରର କାର୍ଯ୍ୟ ପ୍ରଣାଳୀ)

❐❐❐

# ଚୁମ୍ବକୀୟ କ୍ଷେତ୍ର

ଗୋଟିଏ ଚୁମ୍ବକ ନିକଟରେ ରଖାଯାଇଥିବା ଚୁମ୍ବକୀୟ ପଦାର୍ଥ ଉପରେ ଏହା ଗୋଟିଏ ବଳ ପ୍ରୟୋଗ କରିଥାଏ । ଚୁମ୍ବକର ଦୁଇମେରୁ ନିକଟରେ ଏହି ବଳ ହେଉଛି ସର୍ବାଧିକ । ଏହି ବଳ ଚୁମ୍ବକରେ ହିଁ ଅଛି । ଏହି ବଳ ଚୁମ୍ବକ ବାହାରେ ମଧ୍ୟ ଅନୁଭୂତ ହୋଇଥାଏ । ଚୁମ୍ବକ ଚାରିପଟେ ଯେଉଁ ଅଞ୍ଚଳରେ ଚୁମ୍ବକୀୟ ବସ୍ତୁଦ୍ୱାରା ଚୁମ୍ବକୀୟ ବଳ ଅନୁଭୂତ ହୋଇଥାଏ, ସେହି ଅଞ୍ଚଳକୁ ଚୁମ୍ବକର ଚୁମ୍ବକୀୟ କ୍ଷେତ୍ର (magnetic field) କୁହାଯାଏ । ଆମେ ଚୁମ୍ବକୀୟ କ୍ଷେତ୍ରକୁ ଦେଖିପାରିବା ନାହିଁ, ମାତ୍ର ଚୁମ୍ବକୀୟ କ୍ଷେତ୍ରରେ ବଳ କ'ଣ କରିପାରେ, ତାହା ଆମେ ଦେଖିପାରିବା ।

ନିମ୍ନରେ ଦିଆଯାଇଥିବା ପରୀକ୍ଷାଟି ସାଧାରଣତଃ ସ୍କୁଲ ଓ କଲେଜ ପିଲାମାନେ ପରୀକ୍ଷାଗାରରେ କରିଥାଆନ୍ତି । ଗୋଟିଏ ଦଣ୍ଡ ଚୁମ୍ବକ ଉପରେ କାଗଜ ଫର୍ଦ୍ଦଟିଏ ରଖ ଏବଂ କାଗଜ ଉପରେ ଲୁହାଗୁଣ୍ଡ ବିଞ୍ଚିଦିଅ । କିଛି ସମୟ ପରେ ଦେଖାଯିବ ଯେ ଲୁହାଗୁଣ୍ଡଗୁଡିକ ଗୋଟିଏ ନିର୍ଦ୍ଦିଷ୍ଟ ଶୈଳୀରେ ରହିଛି (ଚିତ୍ର ଦେଖ) । ଲୁହାଗୁଣ୍ଡଗୁଡିକ ଯେଉଁ ରେଖା ଉପରେ ରହିଛି, ତାକୁ 'ଚୁମ୍ବକୀୟ ବଳ ରେଖା' କୁହାଯାଏ । ଏହି ରେଖା ଚୁମ୍ବକର ଗୋଟିଏ ମେରୁରୁ ଅନ୍ୟ ମେରୁକୁ ଯାଇଥାଏ । ଚୁମ୍ବକର ଦୁଇ ମେରୁ ନିକଟରେ ଅଧିକ ଲୁହାଗୁଣ୍ଡ ରହିଥିବାର ଦେଖାଯିବ । ଏହାର ଅର୍ଥ ହେଉଛି ଚୁମ୍ବକର ଦୁଇମେରୁ ନିକଟରେ ଚୁମ୍ବକୀୟ ବଳ ହେଉଛି ସର୍ବାଧିକ ।




ଚୁମ୍ବକୀୟ ବଳରେଖା

ଯଦି ଆମେ ଦୁଇଟି ଚୁମ୍ବକର ଉତ୍ତର ମେରୁକୁ (କିମ୍ବା ଦକ୍ଷିଣ ମେରୁକୁ) ପାଖାପାଖି ରଖି ଏହି ପରୀକ୍ଷା କରିବା, ତାହା ହେଲେ ଚୁମ୍ବକୀୟ ବଳରେଖାଗୁଡ଼ିକ ନିମ୍ନ ପ୍ରକାରେ ହେବ ।




ସେହିପରି ଗୋଟିଏ ଚୁମ୍ବକର ଉତ୍ତର ମେରୁ ଓ ଅନ୍ୟ ଚୁମ୍ବକର ଦକ୍ଷିଣ ମେରୁକୁ ପାଖାପାଖି ରଖି ପରୀକ୍ଷା କଲେ ଚୁମ୍ବକୀୟ ବଳରେଖାଗୁଡ଼ିକ ନିମ୍ନ ଭାବରେ ରହିବ ।




ଚୁମ୍ବକୀୟ ବଳ ରେଖା ଥିବା ଅଞ୍ଚଳକୁ ଚୁମ୍ବକୀୟ କ୍ଷେତ୍ର କୁହାଯାଏ । ଯଦି ଗୋଟିଏ ଲୁହାକୁ ଚୁମ୍ବକ ନିକଟରେ ରଖିବା, ମାତ୍ର ଏହା ଚୁମ୍ବକୀୟ କ୍ଷେତ୍ର ମଧ୍ୟରେ ନଥିବ, ତାହାହେଲେ ଏହା ଚୁମ୍ବକ ଦ୍ୱାରା ଆକର୍ଷିତ ହେବନାହିଁ ।

□□□

# ପୃଥିବୀର ଚୁମ୍ବକତ୍ୱ

ଗୋଟିଏ ଦଣ୍ଡ ଚୁମ୍ବକକୁ ମୁକ୍ତ ଭାବରେ ଶୂନ୍ୟରେ ଝୁଲାଇ ରଖିଲେ, ଏହା ଉତ୍ତର-ଦକ୍ଷିଣ ଦିଗ ହୋଇରହିଥାଏ । ଯଦି କିଛି ଦୂରରେ ଆଉ ଗୋଟିଏ ଦଣ୍ଡ ଚୁମ୍ବକକୁ ସେହିପରି ଭାବେ ଝୁଲାଇ ରଖିବା, ଏହା ମଧ୍ୟ ପ୍ରଥମ ଚୁମ୍ବକ ଭଳି ରହିବ । ଦଣ୍ଡ ଚୁମ୍ବକଗୁଡ଼ିକ ଉତ୍ତର-ଦକ୍ଷିଣ ଦିଗ ହୋଇ ରହିବାର କାରଣ ହେଉଛି ପୃଥିବୀର ଚୁମ୍ବକତ୍ୱ ।

ପୃଥିବୀ ଚାରିପଟେ ଗୋଟିଏ ଅତିବଡ଼ ଚୁମ୍ବକୀୟ କ୍ଷେତ୍ର ଅଛି । ଯାହା ଜଣାପଡୁଛି ପୃଥିବୀରେ ଥିବା ଗୋଟିଏ ବଡ଼ ଚୁମ୍ବକ ହେତୁ ଏହି ଚୁମ୍ବକୀୟ କ୍ଷେତ୍ର ଉତ୍ପନ୍ନ ହୋଇଛି । ପୁନଶ୍ଚ ଜଣାପଡୁଛି ଯେ ଏହି 'ପୃଥିବୀ ଚୁମ୍ବକ'ର ଦକ୍ଷିଣ ମେରୁ ଉତ୍ତର ଦିଗକୁ ଏବଂ ଉତ୍ତର ମେରୁ ଦକ୍ଷିଣ ଦିଗକୁ ମୁହଁ କରି ରହିଛି । ପୃଥିବୀର ଚୁମ୍ବକୀୟ କ୍ଷେତ୍ରରେ ଥିବା ବଳ ପ୍ରତ୍ୟେକ ଚୁମ୍ବକୀୟ ସୂଚୀ (କମ୍ପାସ୍) କିମ୍ବା ମୁକ୍ତ ଭାବରେ ଝୁଲି କରି ରହିଥିବା ଦଣ୍ଡ ଚୁମ୍ବକ ଉପରେ କାମ କରିଥାଏ । ଫଳରେ କମ୍ପାସ୍‌ର ସୂଚୀ କିମ୍ବା ଦଣ୍ଡ ଚୁମ୍ବକ ଉତ୍ତର-ଦକ୍ଷିଣ ଦିଗକୁ ସର୍ବଦା ସୂଚୀତ କରିଥାଆନ୍ତି । ପୃଥିବୀ ଏହାର ଚୁମ୍ବକତ୍ୱ କିପରି ପାଇଲା, ବୈଜ୍ଞାନିକମାନେ ଏ ବିଷୟରେ ନିଶ୍ଚିତ ଭାବରେ କିଛି ଜାଣିପାରି ନାହାନ୍ତି । ବୈଜ୍ଞାନିକମାନେ ଅନୁମାନ କରୁଛନ୍ତି ଯେ ପୃଥିବୀର ଅନ୍ତଃଭାଗ (Core)ରେ ତରଳ ଲୁହା ଅଛି ଏବଂ ଏହାର ଘୂର୍ଣ୍ଣନ ଯୋଗୁଁ ପୃଥିବୀ ଚାରିପଟେ ଚୁମ୍ବକୀୟ କ୍ଷେତ୍ର ସୃଷ୍ଟି ହେଉଛି ।

ପୃଥିବୀର ଚୁମ୍ବକୀୟ ମେରୁ ଦୁଇଟି ଏହାର ଭୌଗୋଳିକ ମେରୁ (ଉତ୍ତରମେରୁ ଓ ଦକ୍ଷିଣ ମେରୁ) ନିକଟରେ ନାହିଁ । ଏଗୁଡ଼ିକ ପରସ୍ପରଠାରୁ କିଛି ବ୍ୟବଧାନରେ ଅଛି । ପୃଥିବୀର ଯେକୌଣସି ସ୍ଥାନରେ ଗୋଟିଏ ଭୌଗୋଳିକ ଦ୍ରାଘିମା (meridian) ଓ ଗୋଟିଏ ଚୁମ୍ବକୀୟ ଦ୍ରାଘିମା ଅଛି । ଭୌଗୋଳିକ ଦ୍ରାଘିମା ହେଉଛି ସମତଳ ପୃଷ୍ଠ, ଯେଉଁଥିରେ ସେହି ସ୍ଥାନ ଓ ଭୌଗୋଳିକ ମେରୁଦ୍ୱୟ ଅଛି । ଚୁମ୍ବକୀୟ ଦ୍ରାଘିମା ଓ ଭୌଗୋଳିକ ଦ୍ରାଘିମା ମଧ୍ୟରେ ଥିବା କୋଣକୁ ଚୁମ୍ବକୀୟ ଦିକ୍‌ପାତ (magnetic declination) କୁହାଯାଏ । ପୃଥିବୀର ବିଭିନ୍ନ ସ୍ଥାନରେ ଚୁମ୍ବକୀୟ ଦିକ୍‌ପାତ ହେଉଛି

ଅଲଗା । ପୃଥିବୀର ଚୁମ୍ବକୀୟ କ୍ଷେତ୍ରର ପରିବର୍ତ୍ତନ ହେତୁ ଏହା ମଧ୍ୟ ବର୍ଷକୁ ବର୍ଷ ସାମାନ୍ୟ ପରିବର୍ତ୍ତିତ ହୋଇଥାଏ ।




(ପୃଥିବୀର ଚୁମ୍ବକୀୟ କ୍ଷେତ୍ର)

ଏଣୁ ଜଳଯାତ୍ରାରେ ଯାଉଥିବା ନାବିକମାନେ ଚୁମ୍ବକୀୟ ଦିକ୍‌ପାତକୁ ସେମାନଙ୍କର ଗଣନାରେ ବିଚାର କରିଥାଆନ୍ତି ।

□□□

# ଗଣିତ ସୌରଭ ସିରିଜ

| | | | |
|---|---|---|---|
| ୧. | *ବିଫର୍ଣ୍ଣ ସନ୍ଧ୍ୟା* | ଚନ୍ଦ୍ର କିଶୋର ମହାପାତ୍ର ଓ ଅନ୍ୟମାନେ | ଟ.୮୦/- |
| ୨. | *ଗଣିତର ଏପାଖ ସେପାଖ (୧ମ ଭାଗ)* | ଚନ୍ଦ୍ର କିଶୋର ମହାପାତ୍ର ଓ ଅନ୍ୟମାନେ, | ଟ .୮୫/- |
| ୩. | *ଅବସର ବିନୋଦିନୀ* | ଚନ୍ଦ୍ର କିଶୋର ମହାପାତ୍ର ଓ ଅନ୍ୟମାନେ | ଟ.୧୯୫/- |
| ୪. | *କୁମ୍ଭକୋଣମରୁ କେମ୍ବ୍ରିଜ* | ପ୍ରଫେସର ରାମଶଙ୍କର ରଥ | ଟ.୬୨/- |
| ୫. | *ଭାରତୀୟ ଗଣିତଜ୍ଞ* | ମାୟାଧର ସ୍ୱାଇଁ | ଟ.୧୧୧/- |
| ୬. | *ଗଣିତ କ୍ଲବ* (ପ୍ରଯୁକ୍ତି ବିଜ୍ଞାନ ପୁରସ୍କୃତ) | ନୀଳାମ୍ବର ବିଶ୍ୱାଳ | ଟ.୯୯/- |
| ୭. | *ଗଣିତର ଏପାଖ ସେପାଖ (୨ୟ ଭାଗ)* | ଚନ୍ଦ୍ରକିଶୋର ମହାପାତ୍ର | ଟ.୧୦୦/- |
| ୮. | ଗପ ହେଲେ ବି ଗଣିତ | ଚନ୍ଦ୍ରକିଶୋର ମହାପାତ୍ର | ଟ.୧୦୦/- |
| ୯. | ଅଲୌକିକ ସଂଖ୍ୟା 'ପାଏ' | ମାୟାଧର ସ୍ୱାଇଁ | ଟ.୧୦୦/- |
| ୧୦. | ଗଣିପାରୁଥିବା ଜଣେ ଲୋକ | ଚନ୍ଦ୍ର କିଶୋର ମହାପାତ୍ର | ଟ.୧୦୦/- |
| ୧୧. | ଭାଷା କ'ଣ ନୁହଁଇ ଗଣିତ | ଗୋକୁଳାନନ୍ଦ ଦାସ | ଟ.୫୦/- |
| ୧୧. | *Mathematics Calendar (IV & V)* | C.K. Mohapatra and others | Rs. 100/- |
| ୧୨. | *Mathematics Calendar (VI & VII)* | C.K. Mohapatra and others | Rs. 100/- |
| ୧୪. | *RMO & INMO* | C.K. Mohapatra & others | Rs. 150/- |
| ୧୫. | *First steps for Mathe Olympians* | C.K. Mohapatra | Rs. 120/- |
| ୧୬. | *Problems for Practice* (Vol.I) | Prafulla Chandra Pradhan | Rs. 120/- |
| ୧୭. | *Math Puzzles for Primary Classes* | C.K. Mohapatra | Rs. 80/- |
| ୧୮. | *Math Olympiad Problem Book* | C.K.Mohapatra & others | Rs. 350/- |

## ଗଣିତ ଅଲମ୍ପିଆଡ ସିରିଜ

| | | | |
|---|---|---|---|
| ୧. | *ଗଣିତ ସାପ୍ତାହିକୀ* (୪ର୍ଥ ରୁ ୮ମ ଶ୍ରେଣୀ) | ଚନ୍ଦ୍ର କିଶୋର ମହାପାତ୍ର ଓ ଅନ୍ୟମାନେ | ଟ . ୨୨୦/- |
| ୨. | *ଦିନକୁ ଖଣ୍ଡିଏ ଅଙ୍କ (୪ର୍ଥ ଓ ୫ମ ଶ୍ରେଣୀ)* | ଅମ୍ବିକା ସାହୁ | ଟ. ୮୦/- |
| ୩. | *ଦିନକୁ ଖଣ୍ଡିଏ ଅଙ୍କ (ଷଷ୍ଠ ଓ ସପ୍ତମ ଶ୍ରେଣୀ)* | ଅମ୍ବିକା ସାହୁ | ଟ. ୧୧୦/- |
| ୪. | *ଗଣିତ ଅଲମ୍ପିଆଡ:ପ୍ରଥମ ସୋପାନ* | ଚନ୍ଦ୍ର କିଶୋର ମହାପାତ୍ର | ଟ. ୧୨୦/- |
| ୫. | ତିନୋଟି ଗାଣିତିକ ପଦ୍ଧତି | ଚନ୍ଦ୍ର କିଶୋର ମହାପାତ୍ର ଓ ଅନ୍ୟମାନେ | ଟ. ୩୦/- |

## ଓଡିଶା ଗଣିତ ସଂସଦ ଦ୍ୱାରା ପ୍ରକାଶିତ ଓ ଦି ବୁକ୍ ପଏଣ୍ଟ ଦ୍ୱାରା ବିତରିତ ପୁସ୍ତକାବଳୀ

| | | | |
|---|---|---|---|
| ୧. | *ଶୂନ* | ଗୋକୁଳାନନ୍ଦ ଦାସ | ଟ. ୩୫୦/- |
| ୨. | *ବିଜ୍ଞାନର କଳ୍ପତରୁ - ଗଣିତ ବିଜ୍ଞାନ* | ପ୍ରଫେସର ବଳରାମ ସାହୁ<br>ପ୍ରଫେସର ନିମାଇଁ ଚରଣ ନାୟକ | ଟ. ୧୨୦/- |



ଇଂ. ମାୟାଧର ସ୍ୱାଇଁ କଟକ ଜିଲ୍ଲାର ନରସିଂହପୁର ବ୍ଲକ୍ ଅନ୍ତର୍ଗତ ବାସେଳିହତା ଗ୍ରାମରେ ୧୯୫୬ ମସିହାରେ ଜନ୍ମ ଗ୍ରହଣ କରିଛନ୍ତି । ସେ ୧୯୭୨ ମସିହାରେ କାନପୁର ବଂଶୀଧର ବିଦ୍ୟାପୀଠରୁ ସମଗ୍ର ଓଡ଼ିଶାରେ ପ୍ରଥମ ଦଶଜଣଙ୍କ ମଧ୍ୟରେ ସ୍ଥାନିତ ହୋଇ ମାଟ୍ରିକ୍ୟୁଲେସନ୍ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଥିଲେ । ଏହାପରେ ରେଭେନ୍ସା କଲେଜରୁ ଆଇ.ଏସ୍‌ସି., ବୁର୍ଲା ଇଂଜିନିୟରିଙ୍ଗ୍ କଲେଜରୁ ବି.ଏସ୍.ସି. ଇଞ୍ଜିନିୟରିଙ୍ଗ୍ ବିଶ୍ୱବିଦ୍ୟାଳୟରେ ପ୍ରଥମ ସ୍ଥାନ ଅଧିକାର କରି ଏବଂ ଆଇ.ଆଇ.ଟି ରୁର୍‌କିରୁ ସ୍ନାତକୋତ୍ତର ଡିଗ୍ରୀ ଲାଭ କରିଛନ୍ତି । ସେ ଜାତୀୟ ତାପଜ ବିଦ୍ୟୁତ୍ ନିଗମ, ତାଳଚେର ତାପଜ ବିଦ୍ୟୁତ୍ କେନ୍ଦ୍ର, ଓଡ଼ିଶା ଜଳ ବିଦ୍ୟୁତ୍ କେନ୍ଦ୍ର ଓ ମେକନରେ ବିଭିନ୍ନ ପଦରେ କାର୍ଯ୍ୟକରି ୨୦୧୬ ମସିହାରେ ସେବାନିବୃତ୍ତ ହୋଇଛନ୍ତି । ତାଙ୍କର ମୋଟ ୪୨ଟି ପୁସ୍ତକ ପ୍ରକାଶ ପାଇଛି । ଏହା ବ୍ୟତୀତ ବିଭିନ୍ନ ପତ୍ରପତ୍ରିକାରେ ୫୦୦ରୁ ଅଧିକ ଜନପ୍ରିୟ ବିଜ୍ଞାନ ଓ ଶିଶୁଲେଖା ପ୍ରକାଶିତ ହୋଇଛି । ସାହିତ୍ୟିକ କୃତି ପାଇଁ ସେ ଓଡ଼ିଶା ବିଜ୍ଞାନ ଏକାଡେମୀ, ବିଜ୍ଞାନ ପ୍ରଚାର ସମିତି, ରାଜଧାନୀ ପୁସ୍ତକମେଳା, ଭୁବନେଶ୍ୱର ପୁସ୍ତକ ମେଳା ଓ ଅନ୍ୟାନ୍ୟ ସଂସ୍ଥା ଦ୍ୱାରା ସମ୍ମାନିତ ହୋଇଛନ୍ତି ।

Rs.44/-